# ଭିଟାମିନ୍

ଲେଖକ : ରଂଜନ ପ୍ରଧାନ

ପ୍ରକାଶକ : କ୍ରିଏଟିଭ୍ ଓଡିଶା, ନିଗିନିପୁର, ସାନଜରିଆ, କେନ୍ଦ୍ରାପଡା
ବିତରକ : ପଶ୍ଚିମା ପବ୍ଲିକେଶନ୍‌ସ, ଭୁବନେଶ୍ୱର
ପ୍ରଚ୍ଛଦ: ଅଶୋକ ମହାନ୍ତି
ମୁଦ୍ରଣ : ତୁଳୁଳି ପ୍ରୋସେସ୍ ଏଣ୍ଡ୍ ଅଫ୍‌ସେଟ୍, ଭୁବନେଶ୍ୱର
ପ୍ରଥମ ପ୍ରକାଶ : ୨୦୦୬
ଦ୍ୱିତୀୟ ପ୍ରକାଶ : ୨୦୧୧
ତୃତୀୟ ପ୍ରକାଶ : ୨୦୧୬
ମୂଲ୍ୟ : ୧୨୦.୦୦

BHITAMIN
Story Collection by Ranjan Pradhan
Published by **Creative Odisha,** Niginpur, Sanjaria, Kendrapada
Marketing by Paschima Publications, Bhubaneswar
1st Edition: 2006
2nd Edition: 2011
3rd Edition: 2016
Price .₹ 120.00

*For on line purchase pl visit :*
www. odishaestore.com
www. odikart.com
www. odiabookbazar.com

*Digitized by srujanika@gmail.com*

ମୁଁ ହରେଇଥିବା ବାପା ଓ ବୋଉକୁ  ଓ ତାଙ୍କ ସ୍ମୃତି ସବୁକୁ...

Digitized by srujanika@gmail.com

# ଗପ ଗଛ, କୁକୁଡା ଅଣ୍ଡା, ପ୍ରେମିକାର ଚିଠି

-ଏମିତି ହଠାତ୍ ଇଛା ହେଲା । ତେଣୁ ମାଟିରେ ଗପ ମଞ୍ଜି ପୋତିଲି । ପାଣି ଦେଲି । ଦି ଦିନ ଅପେକ୍ଷା କଲି । ମଞ୍ଜିକୁ ଉଇ, ଢନ୍ଦା, ପିମ୍ପୁଡି କି କୁକୁଡା ଖାଇଯିବେ ବୋଲି ମନ୍ଦା ଉପରେ ନଡ଼ା ଘୋଡାଇଲି । ମଞ୍ଜିରୁ ଅଙ୍କୁରୋଦ୍ଗମ ହେଲା । ଦୁଇଟି ବୀଜପତ୍ର ବାହାରିଲା । ପ୍ରଥମ ଦିନ ସେଇ ଟିକି ଗପ ଗଛ ପାଖରେ ବେଶ୍ ଆଗ୍ରହର ସହ ବସିଲି । ଗଛକୁ ଆଖି ପୂରେଇ ଦେଖିଲି । ତା ପର ଦିନ ବି ସେମିତି ସେହି ଗଛ ପାଖରେ ବସିଲି । ଗଛ ଖୁବ୍ ଶୀଘ୍ର ବଢି ଯାଇ କେମିତି ଶାଖା ପ୍ରଶାଖା ମେଲି ଯାଆନ୍ତା ଭାବି ବ୍ୟସ୍ତ ହୋଇ ପଡିଲି । କିନ୍ତୁ ତତ୍କ୍ଷଣାତ୍ ତାହା ହେବା ସମ୍ଭବ ନଥିଲା । ଏମିତି ଏମିତି ମାସେ କାଳ ଦିଇନ୍ ଯାଇ ସେହି ଗଛ ପାଖରେ ବସିଲି । କିନ୍ତୁ ଗପର ସେହି ଚାରା ଗଛଟି ଶୀଘ୍ର ନ ବଢିବା ଦେଖି ନିରାଶ ହେଲି । ତା ପରେ କ୍ରମେ ସେହି ଗଛଟା ପ୍ରତି ଆଗ୍ରହ କମିଯିବାରୁ ପ୍ରେମରେ ମନୋନିବେଶ କଲି । ଗପ ଗଛ କଥା ଭୁଲି ଗଲି । ପ୍ରେମିକାକୁ ଆଲିଙ୍ଗନ କଲି । ଚୁମା ଦେଲି । ତା ପାଇଁ ଚକୋଲେଟ୍ ଓ ଗୋଲାପ ଫୁଲ ନେଲି । ପାର୍କରେ ତା ସାଥୀରେ ବସିଲି । କ୍ରମେ ସବୁ ସମୟତକ ତାକୁ ଦେଇ ନିଜେ ବେକାର ହୋଇଗଲି । ଏମିତି ଏମିତି ଦି ବର୍ଷ

Digitized by srujanika@gmail.com

ବିତିଗଲା । ଏହା ଭିତରେ ପ୍ରେମିକା ଅନ୍ୟ ଜଣେ ବ୍ୟବସାୟୀକୁ ବାହା ହୋଇ ଘର ସଂସାରରେ ଲିପ୍ତ ରହିଲା । ପିଲା ଛୁଆ ଜନ୍ମ କଲା ଏବଂ ମୋତେ ଭୁଲି ଗଲା । ପ୍ରେମିକାକୁ ହରାଇ ମୁଁ କ୍ରମେ ପାଗଳ ହୋଇଯିବାକୁ ଆରମ୍ଭ କରୁଥିଲି । କିନ୍ତୁ ହଠାତ୍ ଦି ବର୍ଷେ ତଳେ ଲଗେଇଥିବା ଗପ ଗଛ କଥା ମୋର ମନ ପଡିଗଲା । ଗଛଟି ଏବେ କେମିତି ହୋଇଥିବ ଭାବି ତତ୍କ୍ଷଣାତ୍ ଗପ ଗଛ ନିକଟକୁ ଯାଇ ଦେଖିଲି ଗଛଟି ଏହା ମଧ୍ୟରେ ବେଶ୍ କଉଡୁକିଆ ହୋଇ ଯାଇଛି । ପୁଣି ଗଛ ପ୍ରତି ଲୋଭ ଆସିଲା । ପ୍ରେମିକାର ପ୍ରେମ ଓ ପ୍ରତାରଣାକୁ ଭୁଲିବାକୁ ଚେଷ୍ଟା କଲି । ଗପ ଗଛରେ ପୁଣି ପାଣି ଦେଲି । ତାର ଯତ୍ନ ନେଲି । ଏବେଏବେ ଗଛଟି ଫୁଲ ଫଳ ଧରିଛି ।

ନିଜକୁ ମୁଁ ଭାବେ ଗୋଟିଏ ଦେଶି ଅଣ୍ଡା ଦିଆ କୁକୁଡା । ପନ୍ଦର ଦିନ ଅଣ୍ଡା ଦେଲେ ଦି ମାସ କୁଡିକି । ସେମିତି ମୁଁ ମାସେ ଗପ ଲେଖିଲେ ବର୍ଷେ ନିରବ । କିନ୍ତୁ ମାସକ ମଧ୍ୟରେ ନିୟମିତ କୁକୁଡା ଅଣ୍ଡା ଦେଲା ପରି ପ୍ରତିଦିନ ମୋଠୁ ଗୋଟିଏ ଲେଖା ଗପ ବାହାରୁଥାଏ । କିନ୍ତୁ ନିରବ ଥିବା ବର୍ଷକ ମଧ୍ୟରେ କୁକୁଡା ଭଳି ମୋତେ ଯେତେ ନେଇ ପାଣିରେ ମାଡିଲେ କି ଗଞ୍ଜା ପାଖକୁ ଫିଙ୍ଗିଲେ ବି କିଛି ଲାଭ ହୁଏନା । ସେଇ କୁଡୁକୁଡୁ ପେଟି ଭିତରେ ।

ପ୍ରେମିକା ପାଖକୁ ଅନେକ ଚିଠି ଦେଇଛି । ପ୍ରତିଦିନ ଗୋଟିଏ ଲେଖାଏଁ ଚିଠି ଓ ଗୋଲାପ ଫୁଲ । ପ୍ରେମିକାକୁ ଦେଇଥିବା ଅନେକ



Digitized by srujanika@gmail.com

ପ୍ରେମ ଚିଠି ମଧ୍ୟରୁ ଥରେ ଗୋଟିଏ ଚିଠିର କନ୍‌ସେପ୍‌ଟକୁ ମୁଁ ଏକ ପ୍ରେମ ଗପର ରୂପ ଦେଇଦେଲି । ପ୍ରକୃତରେ ତାହା ଭଲ ଗପଟିଏ ବୋଲି ମୋର ଅନେକ ପ୍ରଶଂସକ କହିଲେ । ସେହିଦିନଠାରୁ ଗପ ଲେଖିବାକୁ ମୋର ଆଗ୍ରହ ବଢିଲା । ଲେଖିଲି 'ତନୁଜା ବଳକୁ ନେଇ ଯେତେସବୁ ବେକାରିଆ ଗପ' । ବହିଟା ସେଲ୍ ବି ସେମିତି ହେଲା ।

ପ୍ରଥମେ ମୁଁ କିନ୍ତୁ କବିତା ଲେଖୁଥିଲି । ମୋ କବିତାରେ ଗପର ଆଭାସ ରହିଛି ବୋଲି ଜଣେ କବି ବନ୍ଧୁ କହିଲେ । ବିଶେଷକରି ମୋ କବିତାଗୁଡିକ ଗପଧର୍ମୀ ବୋଲି ତାଙ୍କର ମତ ଥିଲା । ସେ ମୋତେ କହିଲେ ଗପ ଲେଖ, ଭଲ ହେବ । ତାଙ୍କ କଥାରେ ଉତ୍ସାହିତ ହୋଇ ଗପ ଲେଖିଲି । ଲେଖିବା ପ୍ରକ୍ରିୟା ଚାଲୁ ରହିଛି । କିନ୍ତୁ ଏବେ ପୁଣି ଗପ ପ୍ରତି ଏକ ବିପଦ ଦେଖା ଦେଲାଣି । ଆଉ ଜଣେ ବନ୍ଧୁ କହିଲେଣି ଉପନ୍ୟାସ ଲେଖ । ଦେଖାଯାଉ ଆଗକୁ କ'ଣ ଅଛି ।

ମୁଁ ଭାବୁଛି ବାହା ହୋଇଯିବା ପୂର୍ବରୁ କିଛି ଗପ ଲେଖି ଦେଇଥିବି । ବିଳମ୍ବିତ ଗାଡିରେ ପତ୍ନୀ ଯଦି ନିୟମିତ ଆଳୁଅ ଲିଭେଇ ହଇରାଣ ହରକତ କରିବସେ, ତେବେ ଗପ ଲେଖିବା ପ୍ରକ୍ରିୟାଟା ନିଶ୍ଚିତ ଭାବେ ବାଧାପ୍ରାପ୍ତ ହେବାର ସମ୍ଭାବନା ରହିଛି । ତେଣୁ ଅନ୍ତତଃ କିଛି ଗପ ତା ପୂର୍ବରୁ ଜନ୍ମ ନେଇ ଯାଆନ୍ତୁ । ମୁକ୍ତ ଭାବେ ସାହିତ୍ୟ ଦୁନିଆରେ ଘୁରି ବୁଲନ୍ତୁ ଓ ରୋମାନ୍‌ସ କରନ୍ତୁ ।

-ରଞ୍ଜନ ପ୍ରଧାନ



Digitized by srujanika@gmail.com



ସଂକ୍ଷେପରେ ରଞ୍ଜନ ପ୍ରଧାନ

| | |
|---|---|
| ନାମ | ରଞ୍ଜନ ପ୍ରଧାନ |
| ଡାକ ନାଁ | ରଞ୍ଜୁ |
| ଜନ୍ମ ଦିନ | ୧, ମେ ୧୯୭୯ |
| ଜନ୍ମସ୍ଥାନ | ନିଗିନିପୁର, କେନ୍ଦ୍ରାପଡା |
| ରାଶୀ | ତୁଳା |
| ପ୍ରିୟ ଖାଦ୍ୟ | ପଖାଳ, ଜହ୍ନି ପୋଡା, ବେସର ଦିଆ କଲରା ଓ ଭେଣ୍ଡି ଭଜା, ଲେଉଟିଆ ଶାଗ, ବଡ଼ି ଚୁରା |
| ପ୍ରିୟ ପାନୀୟ : | ମାଟି ପାତ୍ରରେ ରଖା ଯାଇଥିବା ଥଣ୍ଡା ପାଣି |
| ପ୍ରିୟ ସ୍ମୃତି | ବାପାଙ୍କୁ ମୁଖାଗ୍ନି ଦେବା ବେଳର ମୁହୁର୍ତ୍ତ |
| ପ୍ରିୟ ଦୁଃଖ | ସୁନ୍ଦରୀ ଚୁଲ୍‌ବୁଲି ଝିଅଟିଏ ହୋଇପାରି ନଥିବାରୁ... |
| ବିରକ୍ତି | ମୋତେ କେହି ଅବିଶ୍ୱାସ କଲେ |
| ପ୍ରିୟ ଇଛା | ବଞ୍ଚି ରହିବା ଓ ପ୍ରେମ କରିବା |
| ପ୍ରିୟ ଅଙ୍ଗ | ମୋ ଦୁଇ ଆଖି |
| ପ୍ରିୟ ସମ୍ବଳ | ମୋ ଅତି ପ୍ରିୟ ମସ୍ତିଷ୍କ |
| ପ୍ରିୟ ଆବିଷ୍କାର: | ମୋ ଭିତରୁ ରଞ୍ଜନ ପ୍ରଧାନକୁ ଖୋଜି ପାଇବା |
| ପ୍ରିୟ ଉଦ୍ଭାବନ: | ମୋ ଦ୍ୱାରା ଲେଖା ଯାଇଥିବା ଗପ ବହି |
| ପ୍ରିୟ ସହର | କଟକ |
| ପ୍ରିୟ ରଙ୍ଗ | ସବୁଜ |
| ପ୍ରିୟ ଋତୁ | ଶୀତ |
| ପ୍ରିୟ ମଣିଷ | ବାପା, ବୋଉ |
| ପ୍ରିୟ ଉକ୍ତି | ସର୍ବେ ଭବନ୍ତୁ ସୁଖୀନଃ.. |
| ପ୍ରିୟ ଚିନ୍ତା | ବଡ଼ ମଣିଷ ହେବା |
| ପ୍ରିୟ ଓଡ଼ିଆ | ଅକ୍ଷୟ ମହାନ୍ତି |
| ପ୍ରିୟ ଗୁରୁ | ଗାଳ୍ପିକ ଗୌରହରି ଦାସ |



Digitized by srujanika@gmail.com

| | |
|---|---|
| ପ୍ରିୟ ଅଭ୍ୟାସ : | ବୁଲାବୁଲି କରିବା, ନୂଆ ନୂଆ ବହି କିଣିବା, ପଢ଼ିବା ଓ ଲେଖିବା |
| ସ୍ୱପ୍ନ | ଈଶ୍ୱରଙ୍କ ପ୍ରତିଦ୍ୱନ୍ଦ୍ୱୀ ହେବା |
| ଆଶା | ଓଡ଼ିଆ ଗପରେ କିଛି ଗୋଟା ନୂଆ କରିକି ଦେଖାଇବା |
| ବୃତ୍ତି | ସାମ୍ବାଦିକତା |
| ପ୍ରିୟ ଦୃଶ୍ୟ | ଗର୍ଭବତୀ ସ୍ତ୍ରୀଟି ହାତକୁ ଭରା ଦେଇ ଚାଲୁଥିବାର ଦୃଶ୍ୟ.. |
| କାମ | ସାମ୍ବାଦିକତା ବ୍ୟତୀତ ପତ୍ରିକା ସମ୍ପାଦନା, ଫିଚର, ଗପ ଓ କବିତା ଲେଖିବା, ଗୀତ ଓ ସିନେମା ସ୍କ୍ରିପ୍ଟ ରଚନା |

**ପ୍ରକାଶିତ ବହି:**

୧. ମାଟିଗୀତ (କବିତା ସଂକଳନ)

୨. ତନୁଜା ବଳକୁ ନେଇ ଯେତେସବୁ ବେକାରିଆ ଗପ (ଗପ ସଂକଳନ)

୩. ଭିଟାମିନ୍ (ଗପ ସଂକଳନ)

**ଖବରକାଗଜ ସ୍ୱୀକୃତି:**

ତିନି ଶହରୁ ଊର୍ଦ୍ଧ୍ୱ ଫଟୋ ସମ୍ବଳିତ ଫିଚର ଓ ବାଇ ଲାଇନ୍ ସହିତ ଅନେକ ଏକ୍ସକ୍ଲୁସିଭ୍ ନିଉଜ୍ ଆଇଟମ୍, ପେଜ୍ ଓ୍ୱାନ୍ ହ୍ୟାଙ୍ଗର ଷ୍ଟୋରି

ଅଭିଜ୍ଞତା: ୨୦ ବର୍ଷର ସାମ୍ବାଦିକତା, ଦୁଇଟି ପତ୍ରିକାର ସମ୍ପାଦନା ଓ ବିଶେଷକରି କୋରାପୁଟ ଜିଲ୍ଲାର ଆଦିବାସୀଙ୍କ ସମ୍ପର୍କରେ ବିରଳ ଅଭିଜ୍ଞତା

**ସମ୍ପର୍କ:** ୯୪୩୭୨-୧୩୮୫୪ (ସେଲ୍)

ମଗ୍ନ ମାନସ, ନିଗିନିପୁର, ସାନ ଜରିଆ, କେନ୍ଦ୍ରାପଡ଼ା (ଡାକ ଠିକଣା)

ranjan.pragyan@gmail.com

ranjan_pragyan@rediffmail.com

**ଅପେକ୍ଷା:**

ଗପ ବହି ପଢ଼ି ସାରିବା ପରେ ପାଠକ ପାଠିକାମାନଙ୍କ ଫୋନ୍ କିମ୍ବା ଚିଠିକୁ...



Digitized by srujanika@gmail.com

## ଏ ବହିରେ ...



*Digitized by srujanika@gmail.com*

ଏକ
ସଂକଟଜନକ
ସ୍ଥିତିରୁ
ମୁକୁଳିବାର
ପ୍ରୟାସ





Digitized by srujanika@gmail.com

ଗୋଟା ମୁତୁରା ମୁତୁରା ଗନ୍ଧରେ ଶ୍ରେଣୀ ଗୃହ ସେତେବେଳକୁ ବାସ୍ନାମୟ ହୋଇ ସାରିଥିବ । ହେଡ୍ ମାଷ୍ଟର ବରାବର ଚଷମା ଖୋଲି ଗନ୍ଧର ଉତ୍ପତ୍ତି ସ୍ଥଳକୁ ଆବିଷ୍କାର କରିବାକୁ ପ୍ରୟାସ କରୁଥିବେ । କପିଳା ଅତ୍ୟନ୍ତ ଭୟଭୀତ ହୋଇ ସାରିଥିବ ।

ଘର କଥା, ବୋଉ କଥା, ମାମି ନାନୀ କଥା ଓ କୁକୁଡ଼ା ଛୁଆ କଥା ମନ ପକେଇ କପିଳାର କୋହ ଆସୁଥିବ । ଘରେ ବୋଉ ରାନ୍ଧୁଥିବ । ଫୁଲ କୋବି ତରକାରୀ ଓ ଟମାଟୋ ଖଟା, ବଡ଼ି ଚୁରା । ମାମି ନାନୀ କଲେଜ ଯାଇଥିବ । ନିଧୁମ୍ ଖରାରେ ଫେରୁଥିବାବେଳେ ତା ମୁହଁ ଝାଳରେ ତେଲିଆ ହୋଇ ଯାଇଥିବ । ବୁନ୍ଦା ବୁନ୍ଦା ଝାଳ ତାର ସମଗ୍ର ମୁହଁକୁ ଦଖଲ କରି ନେଇଥିବେ । ଘରକୁ ଫେରି ଲକ୍ସ ସାବୁନ୍‌ରେ ମୁହଁ ଧୋଇଦେଲେ ମାମି ନାନୀ ପୁଣି ମାଧୁରୀ ଦୀକ୍ଷିତ ଭଳି ଚହଟି ଉଠୁଥିବ । ଆହାଃ... କି ଫ୍ରେସ୍ ହୋଇ ଯାଇଥିବ ମାମି ନାନୀ ପାତିଆ ଲକ୍ସ ସାବୁନ୍‌ଟି ମୁହଁରେ ଘସି ଦେବାପରେ ।

ବାପା ଆସନ୍ତା ମାସରେ ଘରକୁ ଆସିବେ । କଲିକତାରୁ ନୂଆ ଡ୍ରେସ୍ ଓ ବନ୍ଧୁକ ଆଣିଥିବେ । ବାପାଙ୍କ ପକେଟରୁ ଟଙ୍କା ଚୋରି କରି ନେବା କଥା ମନ ପକାଇ କପିଳାର କୋହ ଆହୁରି ବଢ଼ି ଯାଉଥିବ । ବାପା ସତରେ ଗ୍ରେଟ୍ । ବାପାଙ୍କ ପକେଟରୁ ନେଇଥିବା ପଇସାରେ କେତେଥର ପ୍ରଫୁଲ୍ଲ ଦୋକାନରୁ ନଳୀ, ଖଟା ଓ ମିକ୍ସଚର୍ ଖାଇଥିବ ।

କୁନିକୁନି କୁକୁଡ଼ା ଛୁଆ ଖର୍ଦା ବାଗିରେ ଟୁଁ ଟୁଁ କରି ବୋବୋଉଥିବେ । ପୋକଢୋକ ଉଣ୍ଡାଳି ଖାଉଥିବେ । ନାଲି କୁକୁରକୁ ଦେଖି ମା କୁକୁଡ଼ା କଁ କଁ କରି ଡେଣା ଝାଡ଼ି ମାଡ଼ି ଆସୁଥିବ । କୁକୁଡ଼ା ଛୁଆମାନେ ସବୁଠୁ ସୁରକ୍ଷିତ ସ୍ଥାନ ମଣୁଥିବା ସେମାନଙ୍କ ମା ପେଟ ତଳକୁ ପଶି ଯାଉଥିବେ ।

ମାମି ନାନୀ କଲେଜରୁ ଫେରି ଆସିଥିବ । ତା ପାଇଁ କଣ୍ଟାବଣରୁ ଅଙ୍ଗୁର କୋଳି ଓ ଚକୋଲେଟ୍ ଆଣିଥିବ । ମାମି ନାନୀ କଥା ମନ ପକାଇ କପିଳାର କୋହ ଆହୁରି ବଢ଼ି ଯାଉଥିବ । ସନ୍ଧ୍ୟାରେ ମାମି ନାନୀ ସହିତ ଲୁଚକାଳି ଖେଳିବା କଥା ମନ ପଡ଼ି କପିଳାର ଆଖି ଛଳଛଳ ହୋଇ ଯାଉଥିବ ।

କଇଁଆ ଗଛ ମୂଳେ ଏକୁଟିଆ ଧୂଳି ଖେଳୁଥିବାବେଳେ ନେଉଳ ଦେଖି କପିଳା ଚମକି ପଡୁଥିବ । ନେଉଳ ଧରିବାକୁ ତାର ଇଚ୍ଛା ହେଉଥିବ । ଘରେ ଏକ ନେଉଳ ରଖିବାକୁ ବୋଉକୁ କହିବାକୁ ଭାବିଥିବ । କଇଁଆ ଗଛରୁ କୋଇଲି ସୁତା ଛିଣ୍ଡାଉଥିବ । କୋଇଲି ସୁତାକୁ ମାଳି କରି ମାମି ନାନୀ ତା ବେକରେ ଗୁଡ଼ାଇ ଦେଉଥିବ । ମାମି ନାନୀ ତା କଣ୍ଢେଇଗୁଡ଼ିକୁ ଡ୍ରେସ୍ ପିନ୍ଧାଇ ଦେଉଥିବ । ଧୂଳିକୁ ଭାତ, ପାଣିକୁ ଡାଲି ଓ କଇଁଆ ପତ୍ରକୁ ଶାଗ କରି କଣ୍ଢେଇମାନଙ୍କ ପାଇଁ ନଡ଼ିଆ ସଢେଇରେ ବାଢ଼ୁଥିବେ ।

ମାମି ନାନୀ ସହିତ କୂଳ ବିଲରେ ମୋଟି ଶାଗ ତୋଳିବାକୁ ଯାଉଥିବାବେଳେ ଗୋବରୀ



Digitized by srujanika@gmail.com

ନଈରେ ମଲା ଗାଈର ଶବ ଭାସୁଥିବା ଦେଖି କପିଳା ଡରି ଯାଉଥିବ । କପିଳାକୁ କୂଳ ବନ୍ଧ ବର ଗଛ ମୂଳରେ ବସିବାକୁ ଭାରି ଇଛା ହେଉଥିବ । ସେହି ବରଗଛ ମୂଳେ କୁଆଡେ ଡାଆଣୀ ରହନ୍ତି ବୋଲି ଢେଢେ କହୁଥିବେ । ମାମି ନାନୀ ପାଚିଆ ମୋଟି ଶାଗରେ ବୋଝେ ହୋଇଗଲେ ସେ ଘରକୁ ଆସିବାକୁ ଡରଡର ହଉଥିବ । ବୋଉ ଶିକାରେ ଟଙ୍ଗା ଯାଇଥିବା ମାଟି ଆଟୁଆରୁ ଶୁଖୁଆ ବାହାର କରି ମାମି ନାନୀକୁ ଅନେଇ ବସିଥିବ ଏବଂ ମୋଟି ଶାଗ ଆସିଲା ପରେ ବୋଉ ମସ୍ତ ଶାଗ ତିଆରି କରୁଥିବ ।

ବୋଉ କହିବ ମୋ ପୁଅ ବହୁତ ପାଠ ପଢ଼ିଲାଣି । ଇଂଲିଶ ଶିଖିଲାଣି । ଅଙ୍କ କରୁଛି । ଏକ ଦୁଇ ସଂଖ୍ୟା, ପଣିକିଆ ଧାଡି ଶେଷ ହୋଇ ଗଲାଣି । ମିଶାଣ, ଫେଡାଣ କରି ଗଲାଣି । କ୍ଲାସ୍‌ରେ ଫାଷ୍ଟ ହେଉଛି । ମୋ ପୁଅ ବିଡ଼ିଓ ହେବ । ବିଡିଓ ନା ତୋପା!

ପୁଅ ବିଡ଼ିଓ ହେବା ନେଇ ବୋଉ ଛାତି ଫୁଲି ଉଠୁଥିବ । ସେ ଖୁସିରେ ଆତୁହରା ହୋଇ ପଡୁଥିବ । ସକାଳୁ ମୁଢି ଓ ଉଷୁମ୍ କ୍ଷୀର ଆଣି ଦେଉଥିବ ।

ସ୍କୁଲରୁ ଖସି ଚାଲି ଆସିବାକୁ କପିଳାର ଇଛା ହେଉଥିବ । ଆଜି ତାକୁ ସ୍କୁଲଟା ଭାରି ଖରାପ ଲାଗୁଥିବ । ପେଣ୍ଟଟାକୁ ଢାକିଢୁକି କପିଳା ଅସ୍ତବ୍ୟସ୍ତ ହେଉଥିବ । ମୁତ ଗନ୍ଧରେ ସ୍କୁଲ ଘର ମହକି ଉଠୁଥିବ । ବୁଢା ହେଡ୍ ମାଷ୍ଟରଟା ନାକତ, ସତେକି ମଲ୍ଲୀ ଫୁଲ କି ଅତରରେ ତିଆରି; ଖାଲି ତାକୁ ଗନ୍ଧ ପଶି ଯାଉଥିବ । ବୁଢା ମାଷ୍ଟରଟା ନାକ ବରାବର ଟେକୁଥିବାରୁ କପିଳାକୁ ବେଶି ଭୟ ଲାଗୁଥିବ । କାଳେ ମାମଲାଟା ପଦାକୁ ଆସିଯିବ ସେହି ଭୟରେ କପିଳା ଥରୁଥିବ ।

ମାଷ୍ଟର ଜାଣିଗଲେ ସବୁ ସରିଯିବ । ସବୁ ପିଲା ଜାଣିଯିବେ । କଥା ରାଷ୍ଟ୍ର ହୋଇଯିବ । ହେଂସ ମୁତୁରା ବୋଲି ସମସ୍ତେ ଚିଡେଇବେ । ସବୁଠୁ ବେଶୀ ଡର କୁସୁମ, ରସି, ଉମି, ପାକି, ଟିକିଲି, ଗଜିଆ, ମଙ୍ଗୁଳିଆକୁ । ସେମାନେ ତାକୁ ବେଶି ଚିଡେଇବେ । ଅତି ସୁତୁରି ଉମି କପିଳାକୁ ଯେତିକି ଭଲ ପାଉଥିବ ତାହା ପୁଣି ତିଷ୍ଟର୍ବ ହୋଇଯିବ । ଗୋବର ମାଡିଲେ ସାତ ଥର ଗୋଡ ଧୋଉଥିବା ସୁତୁରୀ ଝିଅ ଉମି ଯିଏକି ତାକୁ ଶର୍ଦ୍ଧା କରୁଥିବ; ଉକ୍ତ ଘଟଣା ଜାଣିଲା ପରେ ସବୁ ଗୋଳମାଳ ହୋଇଯିବ ।

କପିଳାର ମୁତ ଭିଜା ପେଣ୍ଟଟା ସେମିତି ଓଦା ରହିଥିବ । ଗଲା କାଲିର ମୁତ ପେଣ୍ଟଟା ଆଜି ପର୍ଯ୍ୟନ୍ତ ବି ଶୁଖିନଥିବ । କେମିତି କ'ଣ ପେଣ୍ଟଟା ଚଟାପଟ୍ ଶୁଖି ଯାଆନ୍ତା କି କପିଳା ମନେମନେ ଠାକୁରଙ୍କୁ ଡାକୁଥିବ । ଗାଁ ବାଟ ବୁଢୀ ମଙ୍ଗଳାକୁ ମନେମନେ କପିଳା ଅନେକ ଥର ଡାକି ବାରମ୍ବାର ବିଫଳ ହେଉଥିବ । କିନ୍ତୁ ମୁତ ଭିଜା ପେଣ୍ଟଟା ଜମାରୁ ନ ଶୁଖିବା ଜିଦ୍‌ରେ ଅଟଳ ରହୁଥିବ । ହଟ ଦେଖା ପେଣ୍ଟଟା ଟିକେ ହେଲେ ବି ଶୁଖୁ ନଥିବ ।

ତାର ପ୍ରିୟ ପାଟଣୀ ଛେଳି ଯେତେଥର ହଜିଥିବ, ବୁଢୀ ମଙ୍ଗଳାକୁ ଡାକିଦେଲାମାତ୍ରେ ମିଳି ଯାଇଥିବ । ଥରେ ଦୁଇ ଦିନ ଛେଳିଟା କୁଆଡେ ଚାଲିଯାଇଥିବ । ବୁଢୀ ମଙ୍ଗଳାକୁ ଡାକିଡାକି କପିଳା



Digitized by srujanika@gmail.com

ରାତି ସାରା ଶୋଇ ନଥିବ । ପରଦିନ ସକାଳୁ ଦେଖିଲା ବେଳକୁ ଛେଳି ଆସି ହାଜର ହୋଇ ଯାଇଥିବ । କିନ୍ତୁ ଆଜି ବୁଢ଼ୀ ମଙ୍ଗଳାଙ୍କୁ ଏତେ ଡାକିବା ସତ୍ତ୍ୱେ ତାର ଏଇ ଓଦା ପେଣ୍ଟଟା ଚଟାପଟ୍ କାହିଁକି ଶୁଖି ଯାଉନି କେଜାଣି ।

ପେଣ୍ଟଟା ଶୁଖୁ ନଥିବାରୁ କପିଳା ଅଧିକ କରୁଣ କରୁଣ ଲାଗୁଥିବ । ଗୋଟା ଉତ୍କଟ ମୂତ ଗନ୍ଧ କପିଳା ପେଣ୍ଟରୁ ବାହାରି ପଡି ଶ୍ରେଣୀ ଗୃହ ପରିକ୍ରମା କରୁଥିବ । ଶ୍ରେଣୀ ଗୃହ ପରିକ୍ରମା କରୁକରୁ ଉକ୍ତ ମୂତ ଗନ୍ଧ ମହାଶୟଜଣକ ପୁଣି ଯାଇ ସେହି ବୁଢା ହେଡ୍ ମାଷ୍ଟରର ମଲ୍ଲୀ ଫୁଲିଆ ନାକରେ ବାଜି ଯାଉଥିବ । ମାଷ୍ଟର ଆଡକୁ ସାତକୁ ଅନେଇ ମୂତ ଗନ୍ଧ କେଉଁଠୁ ଆସୁଛି ବୋଲି କହୁଥିବେ । କିଏ ପିଲା ପେଣ୍ଟରେ ମୁତିଛି କି ବୋଲି ହେଡ୍ ମାଷ୍ଟର ଚିତ୍କାର କରୁଥିବେ । ଏହା ଦେଖି କପିଳାର ଦେହରୁ ଝାଳ ବାହାରି ପଡୁଥିବ ।

କପିଳା ଏହି ସମୟରେ ମାମି ନାନୀ ଓ କୁକୁଡା ଛୁଆ କଥା ମନ ପକେଇ ଘରକୁ ପଳେଇ ଆସିବାକୁ ଚେଷ୍ଟା କରୁଥିବ । କିନ୍ତୁ କ୍ଲାସ୍ ସରୁ ନଥିବ । କପିଳା କିଛି ବି ପାଠ ବୁଝୁ ନଥିବ । କୋଇଲି ସୂତା ମାଳି କରି ପିନ୍ଧିଲେ ପେଣ୍ଟ ମୁତା ବନ୍ଦ ହୁଏ ବୋଲି ମାମି ନାନି କଥା ତାର ମନ ପଡୁଥିବ ଏବଂ କାନ୍ଦ ମାଡୁଥିବ ।

ପଞ୍ଚମ ଶ୍ରେଣୀରେ ହେଡ୍ ମାଷ୍ଟର ଗଣିତ ପଢାଉଥିବେ । ଘର କଥା ମନ ପଡି କପିଳାର କୋହ ଉଠୁଥିବ । ଚଅଟ୍ କିନା ଘରକୁ ଦଉଡି ପଳେଇବାକୁ ଇଛା ହେଉଥିବ । କିନ୍ତୁ ହେଡ୍ ମାଷ୍ଟରଙ୍କ ଡରରେ ଜାକିଜୁକି ଚଦର ଘୋଡେଇ ହୋଇ ବସିଥିବ । ଲସାଗୁ, ଗସାଗୁ ତାକୁ ବୋର୍ ଲାଗୁଥିବ । ଦେହରେ ଘୋଡେଇ ହୋଇଥିବା ଉଲ୍ ଚଦର ତା ଇଜତ୍ ରକ୍ଷା କରିବାର ସାହା ଭରସା ବୋଲି ଭାବୁଥିବ । ଏହି ଉଲ୍ ଚଦରଟା ପାଇଁ ସେ ପେଣ୍ଟରେ ମୁତିଛି ବୋଲି କେହି ଜାଣି ପାରୁ ନାହାନ୍ତି ଭାବି ସାମାନ୍ୟ ଆଶ୍ୱସ୍ତି ଲାଭ କରୁଥିବ ।

କପିଳା ଗତ କାଲି ରାତି କଥା ଭାବି ବହୁତ ପଶ୍ଚାତାପ କରୁଥିବ । ଭାବୁଥିବ କାଲି ରାତିରେ ଖାଇ ସାରି ମୋଟେ ପାଣି ପିଇବନି ବୋଲି; କିନ୍ତୁ ଅଧିକ ଶୋଷରେ ବିଳମ୍ବିତ ରାତିରେ ଘଟିବାକୁ ଥିବା ସଂକଟଜନକ ପରିସ୍ଥିତି କଥା ଭୁଲିଯାଇ ଅଧିକ ପାଣି ପିଇ ଦେଇଥିବ । ଯୋଗକୁ ସେହି ଅଭାବନୀୟ ଘଟଣା ଗଲା କାଲି ରାତିରେ ହିଁ ଘଟିଥିବ । ଏଥିନେଇ ସେ ଗଲା କେଇ ବର୍ଷ ଧରି କେତେ ଠାକୁରଙ୍କୁ ଡାକି ଆସୁଥିବ । ତଥାପି ଠାକୁର ତା କଥା ଶୁଣୁ ନ ଥିବେ । ଏହି ଭୟରେ ସେ କୌଣସି ବି ରାତିରେ ଯେତେ ଶୋଷ କରୁଥିଲେ ମଧ୍ୟ ପାଣି ପିଉ ନଥିବ । କିନ୍ତୁ ପରଦିନ ଶନିବାର ଓ ସକାଳୁଆ ସ୍କୁଲ ବୋଲି କାଲି ରାତିରେ ସେ ଭୁଲି ଯାଇଥିବ । ସେଦିନ ରାତିରେ ଭାତ ଖାଇଥିବ ଓ ଅଧିକ ପାଣି ପିଇ ଦେଇଥିବ । ହଉ, ରାତିରେ ଯାହା ହବା କଥା ହବ ଦେଖାଯିବ ଭାବି ଆଖିକୁ ନିଦ ଆସିବା ପର୍ଯ୍ୟନ୍ତ ବେପରୁଆ ହୋଇ ଯାଇଥିବ ।



Digitized by srujanika@gmail.com

ସବୁ ରାତିରେ ବିଛଣାରେ ମୁତି ସାରିଲା ପରେ ହିଁ ତା ନିଦ ଭାଙ୍ଗୁଥିବ । ଅନେକ ସମୟରେ ମୁତିବା ପ୍ରକ୍ରିୟାଟା ଷ୍ଟାର୍ଟ ହେଲାବେଳକୁ ତାର ନିଦ ଭାଙ୍ଗି ଯାଇଥିବ ; ହେଲେ ଆରମ୍ଭ ହେଲାଣି ତ ଶେଷ ହୋଇଯାଉ ବୋଲି ଭାବି କାର୍ଯ୍ୟକ୍ରମ ସମ୍ପୂର୍ଣ୍ଣ ହେବା ପର୍ଯ୍ୟନ୍ତ ଅପେକ୍ଷା କରିଥିବ । ମୁତିବା ପ୍ରକ୍ରିୟା ଦ୍ୱାରା ନର୍ଗତ ହୋଇଥିବା ଲବଣାକ୍ତ ଓ ସାମାନ୍ୟ ଉଷୁମ ଥିବା ଜଳ ସାପ ଭଳିଆ ପକା ଚଟାଣ ଦେଇ ଗଡିଗଡି ମାମି ନାନୀକୁ ଛୁଇଁ ଦେଉଥିବ । ମାମି ନାନୀ ଚମକିପଡି ଇଲୋ ବୋଉଲୋ କହି ସମସ୍ତଙ୍କ ନିଦ ଭାଙ୍ଗି ଦେଉଥିବ । କପିଳା ଉପରକୁ ଗିଡିଗଡି ହେଉଥିବ । ଯାଇ ଫ୍ରକ୍ ବଦଳେଇ ପୁଣି ଶୋଇବାକୁ ଚେଷ୍ଟା କରୁଥିବ । କପିଳା କିନ୍ତୁ ସେଇ ଓଦା ପେଣ୍ଟ ସହିତ ରାତି କଟାଇ ଦେବାକୁ ଭାବି ନେଇଥିବ । ସକାଳ ହେଉଥିବ । ରାମ ଭାଇନାଙ୍କ ନଡିଆ ଗଛ ପଛପଟେ ସୂର୍ଯ୍ୟ ଉଇଁଥିବେ । ମାମି ନାନୀ ସକାଳୁ ଉଠି ଯାଇ ଖରା ପୁଆଁଉ ଥିବ । କପିଳା ଗଲା କାଲି ରାତିର ଦୁଃଖରେ ମନ ଊଣା କରୁଥିବ । ତା ଜୀବନକୁ ଧିକ୍ ବୋଲି କହି କାନ୍ଦି ପକାଉଥିବ ।

ତେବେ ଶନିବାର ସକାଳୁଆ ସ୍କୁଲ ବୋଲି କପିଳା ଗଲା ରାତିର ଓଦା ପେଣ୍ଟକୁ ବଦଳେଇବାକୁ ଭୁଲି ଯାଇଥିବ । ଏହା ଛଡା ତାର ସବୁଯାକ ପେଣ୍ଟ ବୋଉ ସଫା କରି ଦେଇଥିବାରୁ କିଛି ବି ଏତେ ସକାଳୁ ଶୁଖି ନଥିବ । ପୁଣି ମଧ୍ୟ ଶୀତ ଦିନ ଓ ଶନିବାର ସକାଳୁଆ ସ୍କୁଲ ; ଚଦର ଘୋଡେଇ ହୋଇ ଦୁଇ ଘଣ୍ଟା ବସିଗଲେ ସ୍କୁଲ୍ କାମଟା ସରିଯିବ ବୋଲି ଭାବି ଭାବି କପିଳା ସ୍କୁଲକୁ ଆସିଥିବ ।

କପିଳା ଭାବିଥିବ ଶନିବାରିଆ ସ୍କୁଲ; ବୁଢା ହେଡ୍ ମାଷ୍ଟରଟା ଆସିବନି । ତା ଛଡା ସେ ଟୋକା ଗଣେଶ ମାଷ୍ଟରଟା ଶୀଘ୍ର ସ୍କୁଲ ଛୁଟି କରିଦେବ ଓ ସେ ପଳେଇ ଆସି କୁକୁଡା ଛୁଆଙ୍କ ସାଙ୍ଗରେ ଖେଳିବ ଓ ବୋଉ ପାଖରୁ କୋବି ତରକାରୀ ଖାଇବ ଓ ବାଡି ଗଡିଆରେ ବୁଡିବ ଓ ଟୁକୁ, ମିଲି ସାଙ୍ଗରେ କଣ୍ଟେଇ କୋଳି ତୋଳିଯିବ ଓ ଖାଲ ପାଟ ଧାନ ବିଲରୁ ମାଛ ଧରିବ ଓ ସନ୍ଧ୍ୟାରେ ମାମି ନାନୀ ସାଙ୍ଗରେ ଲୁଚକାଳି ଖେଳିବ । କିନ୍ତୁ ତାହା ପ୍ରକୃତରେ ଘଟୁ ନଥିବ ଓ ସେ ବୁଢା ହେଡ୍ ମାଷ୍ଟରଟା ସ୍କୁଲ୍ ଛୁଟି କରିବା କଥା ଭୁଲି ଗଲାଣି ବୋଲି ଭାବି କପିଳା ଅଧିକରୁ ଅଧିକ ବେସ୍ତ ଓ କରୁଣ ହୋଇ ପଡୁଥିବ ।

ସେତେବେଳେ ସେ ନିଜକୁ ପୃଥିବୀର ସବୁଠୁ ଅଧିକ ଦୁଃଖୀ ବୋଲି ଭାବୁଥିବ ଏବଂ ମରିଯିବାକୁ ଇଛା କରୁଥିବ । ମରିଗଲେ ବୋଉ ଓ ମାମି ନାନୀଙ୍କୁ ଆଉ ଦେଖିହେବ ନାହିଁ ଏବଂ ବାପା ଆସନ୍ତା ମାସରେ ଘରକୁ ଆସିବେ ବୋଲି ଭାବି ଦେଲା ପରେ ପୁଣି ମରିଯିବାର ଇଛାରୁ ବିରତି ନେଉଥିବ ।

କ୍ରମେ କପିଳାର ଦୁଃଖ ଅଧିକ ବଢି ଯାଉଥିବ । ଏତେ ସକାଳୁ ଖରା ବି ପଡି ନଥିବ । ଶୀତରେ ଦେହ ଥରି ଯାଉଥିବ । ଏତେ ଥଣ୍ଡାରେ କଣ ପେଣ୍ଟଟା ସହଜେ ଶୁଖିବ? କପିଳା ଅଧିକରୁ ଅଧିକ ଗୁଡ଼ି ହୋଇ ଯାଉଥିବ । ଝିଅ ପିଲା ହୋଇଥିଲେ ଫ୍ରକ୍ ତଳେ ପେଣ୍ଟ ନ ପିନ୍ଧିଥିଲେ ଚଳି ଥାଆନ୍ତା ବୋଲି ଭାବି ମନ ଊଣା କରୁଥିବ ।



Digitized by srujanika@gmail.com

ଭଗବାନ ତାକୁ ଏମିତି କାହିଁକି ଦୁଃଖ ଦେଉଛନ୍ତି କେଜାଣି? ଭଲ ପାଠ ପଢୁଥିବାରୁ କପିଳାକୁ ଯେତିକି ଖୁସି ଲାଗୁଥିବ, ପେଣ୍ଟରେ ମୁତୁଥିବାରୁ ତାର ମନ ଅଧିକ ଦୁଃଖ ହୋଇଯାଉଥିବ ।

ଯଦି ସେ ପେଣ୍ଟରେ ମୁତୁ ନଥାଆନ୍ତା ତେବେ ସେ ସ୍କୁଲରେ ବହୁତ ଦୁଷ୍ଟ ହୋଇଥାଆନ୍ତା । ସ୍ମାର୍ଟ ହୋଇ ବୁଲୁଥାଆନ୍ତା । ପ୍ୟାଣ୍ଟ୍ ସାର୍ଟ୍ ଇନ୍ କରି ଆସିଥାଆନ୍ତା । ରସି, ଉମି, କୁସୁମ ଓ ତଲିକୁ ଖାତିର କରି ନଥାଆନ୍ତା । ସେମାନେ ଓପରେ ପଡି କଥା ନହେବା ପର୍ଯ୍ୟନ୍ତ ସେମାନଙ୍କୁ ଅନେଇ ବି ନ ଥାଆନ୍ତା । ପଡିଆରେ ଡିଆଁଡେଇଁ କରୁଥାଆନ୍ତା । କଳାପଟାରେ ଯାଇ ଅଙ୍କ କଷୁ ଥାଆନ୍ତା । ମାଷ୍ଟରକୁ ଗ୍ଲାସ୍‌ରେ ପାଣି ଦେଇ ଥାଆନ୍ତା (ସ୍କୁଲର ସବୁଠୁ ସୁନ୍ଦରୀ ସଫା ସୁତୁରୀ ଉମି ହିଁ ସବୁବେଳେ ମାଷ୍ଟରକୁ ଗ୍ଲାସ୍‌ରେ ପାଣି ଦିଏ ଏବଂ ଏହା ସବୁଦିନ କପିଳାକୁ ଆଘାତ ଦିଏ) । ଚୁଲ୍‌ବୁଲି ଗୋରୀ ପିଙ୍କି ପାଖରେ ଯାଇ ବସି ଥାଆନ୍ତା । ତା ବେଗ୍‌ରୁ ବର କୋଳି ନେଇ ଆସିଥାଆନ୍ତା । ତାକୁ ଚିମୁଟି ଦେଇ ଥାଆନ୍ତା । ଉଁ.. ମରିଯାଉନୁ ବୋଲି ପିଙ୍କି କପିଳାକୁ କହିଥାଆନ୍ତା । କପିଳା ହସିହସି ତାକୁ ଆହୁରି ଚିଡେଇ ଥାଆନ୍ତା । ଭାରି ମଜା ହୋଇଥାଆନ୍ତା ।

ଏମିତି କେତେ କ'ଣ ଦୁଷ୍ଟାମି କରି ଥାଆନ୍ତା ବୋଲି ଭାବିଭାବି କ୍ରମେ କପିଳା ଅଧିକ ଦୁଃଖୀ ହୋଇ ପଡୁଥିବ ।

ପେଣ୍ଟରେ ମୁତି ଦେଇଥିବାରୁ ଆଜି କପିଳା ଏସବୁ କିଛି ବି କରି ପାରୁନଥିବ । ପେଣ୍ଟଟାକୁ କେବଳ ଉଲ୍ ଚଦରରେ ଘୋଡେଇ ଦେବାକୁ ଚେଷ୍ଟା କରୁଥିବ । କିନ୍ତୁ ଗନ୍ଧକୁ ଲୁଚେଇବାକୁ ସେ ଶତ ଚେଷ୍ଟା କରି ମଧ୍ୟ ବିଫଳ ହେଉଥିବ ।

ମୁତ ଗନ୍ଧ ତାକୁ ବାରମ୍ବାର ପ୍ରତାରଣା କରୁଥିବ । ବୁଲିବୁଲି ସମସ୍ତଙ୍କ ନାକରେ ବାଡିବାକୁ କପିଳାକୁ ଧମକ ଦେଉଥିବ । କପିଳା ଉକ୍ତ ମୁତ ଗନ୍ଧ ମହାଶୟଙ୍କୁ ତା ପେଣ୍ଟରୁ ବାହାରି ଆଉ କେଉଁଠିକୁ ବୁଲି ନ ଯିବାକୁ ନେହୁରା ହେଉଥିବ ।

କପିଳାର କେବଳ ଗୋଟିଏ କଥା ଭାବି ଭାବି ଭୟରେ ଦେହରୁ ଝାଳ ବାହାରି ପଡୁଥିବ । ଯଦି ହଠାତ୍ ମାଷ୍ଟର କହିବ ସବୁ ପିଲାମାନେ ଚଦର ଖୋଲି ଦିଅ ଓ ସମସ୍ତଙ୍କ ପେଣ୍ଟ୍ ଚେକ୍ କର, ତେବେ କପିଳାର ସବୁ ଇଜତ୍ ଚାଲିଯିବ ବୋଲି ଏକ ସାମ୍ଭାବ୍ୟ ଭୟରେ ତା ମୁହଁ ନାଲି ପଡି ଯାଉଥିବ । କିନ୍ତୁ ଅନ୍ୟମନସ୍କ ଭାବେ ମାଷ୍ଟରର କଥାରେ ହଁ ହାଁ ମାରୁଥିବ । କଳାପଟାରେ ଅଙ୍କ କଷି ଅନ୍ୟ ସବୁ ପିଲାମାନଙ୍କୁ ବୁଝାଇ ଦେବାକୁ ଯଦି ମାଷ୍ଟର କପିଳାକୁ କହନ୍ତି ତେବେ ସବୁ ଗଣ୍ଡଗୋଳିଆ ହୋଇଯିବ ବୋଲି ଭାବି କପିଳାର ଦେହରୁ ରକ୍ତ ଶୁଖି ଯାଉଥିବ । ବୁଢୀ ମଙ୍ଗଳା ତାକୁ ଏହି ବିପଦରୁ ରକ୍ଷା କରିବାକୁ କପିଳା ଯଥା ସମ୍ଭବ ଚେଷ୍ଟା କରୁଥିବ ।

କିନ୍ତୁ ସ୍କୁଲ ଛୁଟି ହେବା ସମୟକୁ ଅପେକ୍ଷା କରି କପିଳା ଚଞ୍ଚଳ ହୋଇ ଉଠୁଥିବ । ସ୍କୁଲ ଘଣ୍ଟା ବାଜିଲା ବେଳକୁ କପିଳା ଖୁସିରେ ଉଛୁଳି ପଡୁଥିବ । ତାର ଗୋଡ ତଳେ ଲାଗୁ ନଥିବ । ◘



Digitized by srujanika@gmail.com

ପୁଣି
ଏକ
ସେକ୍ସ
ର୍ୟାକେଟ୍,
ରାଣୀ
ମହୁମାଛି
ଗିରଫ





Digitized by srujanika@gmail.com

ସୀମାନ୍ତକୁ ସବୁ ସ୍ଲିଭ୍‌ଲେସ୍ ଝିଅ ଭଲ ଲାଗନ୍ତି । ଜିନ୍‌ସ ସର୍ଟ୍‌ସ ଓ ବାନିୟନ ପିନ୍ଧା ଝିଅ ଭଲ ଲାଗନ୍ତି । ମୁହଁରେ ବ୍ରଣ ଉଠିଥିବା ଝିଅ ଭଲ ଲାଗନ୍ତି । ଲମ୍ବା ବେକ ଓ ବତିଶ୍ ଛାତିର ଝିଅ ଭଲ ଲାଗନ୍ତି । କଥା କଥାରେ ଇ..ମା.. କହୁଥିବା ଝିଅ ଭଲ ଲାଗନ୍ତି । ସହରର ମୁଖ୍ୟ ରାସ୍ତାରେ କାର୍ ଡ୍ରାଇଭିଂ କରୁଥିବା ଝିଅ ଭଲ ଲାଗନ୍ତି । ମୋବାଇଲ୍‌ରେ କଥା ହେଉଥିବା ଝିଅ ଭଲ ଲାଗନ୍ତି । ଆଗ ଦାନ୍ତ ସାମାନ୍ୟ ବଢ଼ିଥିବା ଝିଅ ଭଲ ଲାଗନ୍ତି । ପୁଅମାନଙ୍କ ସହ ବେଶି ମିଳାମିଶା କରୁଥିବା ଝିଅ ଭଲ ଲାଗନ୍ତି । ସବୁବେଳେ ହସହସ ଓ ଆଖି ନଚେଇ କଥା କହୁଥିବା ଝିଅ ଭଲ ଲାଗନ୍ତି । ସେଇଥିପାଇଁ ୟୁନିଭର୍ସିଟି ବିଉଟି ଅପେକ୍ଷା ରାୟ ବି ସୀମାନ୍ତକୁ ଭଲ ଲାଗେ ।

କ୍ଲାସ୍‌ରେ ବେଞ୍ଚରେ ଗୋଟିଏ କୋଣକୁ ମୁହଁ ଓହଳେଇ ବସିଥିବା ଝିଅ ସୀମାନ୍ତକୁ ଭଲ ଲାଗନ୍ତି ନାହିଁ । ରାସ୍ତାରେ ଯାଉଥିବାବେଳେ କେଉଁ ଆଡକୁ ନ ଅନେଇ ତଳକୁ ମୁହଁ ପୋତିପୋତି ଚାଲୁଥିବା ଝିଅ ତାକୁ ଭଲ ଲାଗନ୍ତି ନାହିଁ । ଦେହ ହାତ ସବୁକୁ କଭର୍ କରି ଦେଇଥିବା ଟ୍ରାଡିସିନାଲ୍ ଡ୍ରେସ୍ ପିନ୍ଧା ଝିଅ ତାକୁ ଭଲ ଲାଗନ୍ତି ନାହିଁ । ମୁହଁକୁ ଛିଞ୍ଚାଡି କଥା କହୁଥିବା ଝିଅ ତାକୁ ଭଲ ଲାଗନ୍ତି ନାହିଁ । ନିଜକୁ ଅଧିକ ସୁନ୍ଦରୀ ଭାବି ଗର୍ବରେ କାହାରି ସହ କଥା ହେଉ ନଥିବା ଝିଅ ତାକୁ ଭଲ ଲାଗନ୍ତି ନାହିଁ । ଓଷା ବ୍ରତ କରୁଥିବା ଅର୍ଥୋଡକ୍ସ ଝିଅ ତାକୁ ଭଲ ଲାଗନ୍ତି ନାହିଁ । ସେଇଥିପାଇଁ ୟୁନିଭର୍ସିଟିର ସନ୍ତୋଷିନୀ, ତୃପ୍ତି ଆଚାର୍ଯ୍ୟ, ସୀମା ମିଶ୍ର ଆଦି ସୀମାନ୍ତକୁ ଭଲ ଲାଗନ୍ତି ନାହିଁ ।

ସୀମାନ୍ତର ଧାରଣା ଯେଉଁ ସହରରେ ସୁନ୍ଦରୀ ଝିଅ ଯେତେ ଅଧିକ ସେ ସହର ସେତେ ସମୃଦ୍ଧ ଓ ଜୀବନ୍ତ । ସୁନ୍ଦରୀ ଝିଅବହୁଳ ସହରର ଷ୍ଟାଟସ୍ ସ୍ପେଶାଲ ବୋଲି ସୀମାନ୍ତର ଯୁକ୍ତି । ଏମିତି ଅନେକ ଅଜବ ଥ୍ରେଡ୍‌ଲେସ୍ ଯୁକ୍ତିର ଏକୁଟି ଶାଳ ହେଉଛି ସୀମାନ୍ତର ସେହି ୨୪ ବର୍ଷୀୟ ପ୍ରିୟ ମସ୍ତିଷ୍କ । ତାର ସବୁବେଳେ ଅଜବ ଯୁକ୍ତି । ଝିଅମାନଙ୍କୁ ନେଇ ଅଜବ ଫିଲୋସଫି । ଝିଅମାନଙ୍କୁ ନେଇ ସୀମାନ୍ତର କନ୍‌ସେପ୍‌ସନ୍ ମୁସ୍କିଲ୍ ।

ଅପେକ୍ଷା ରାୟକୁ ଦେବୀଠାରୁ ଅଧିକ ଭକ୍ତି କରେ ସୀମାନ୍ତ । ଅନ୍ଧ ଭାବେ ଅପେକ୍ଷା ରାୟକୁ ବିଶ୍ୱାସ କରେ ସୀମାନ୍ତ । ତେବେ କ'ଣ ଅପେକ୍ଷା ରାୟ ଦେବୀ ଦୁର୍ଗାଙ୍କର ଆଧୁନିକ ରୂପ ନା ମାତା ଲକ୍ଷ୍ମୀଙ୍କର ନୂଆ ସଂସ୍କରଣ ନା ମହାକାଳୀଙ୍କର ଦ୍ୱିତୀୟ ଅବତାର?

କିନ୍ତୁ ଡବ୍‌ଲୁର ଯୁକ୍ତି ଓଲଟା । ସେ ସବୁବେଳେ ସୁନ୍ଦରୀ ଝିଅମାନଙ୍କୁ ଘୃଣା କରେ । ବିରୋଧ କରେ । ତା ମତରେ ସୁନ୍ଦରୀ ଝିଅମାନେ ହେଉଛନ୍ତି ସପ୍ତମ ଶ୍ରେଣୀର ଗଧ ଛାତ୍ରଙ୍କ ପାଇଁ ନଳକୁଣ୍ଡ ଅଙ୍କ, କେବିକେ ଜିଲ୍ଲାମାନଙ୍କୁ ଜାତୀୟ ଖାଦ୍ୟ ପାଇଁ କାମ ଯୋଜନାରେ ଆସୁଥିବା ଚାଉଳ; ଯାହାକୁ ନେଇ ଯେତେ ଗଣ୍ଡଗୋଳ । ସୁନ୍ଦରୀ ଝିଅମାନେ ହିଁ ସାରୁ ପତ୍ରରେ ଜଳଜଳ ହେଉଥିବା ଜାକର ବିନ୍ଦୁ ଓ ସର୍ବଦା ତଳକୁ ଖସି ପଡିବାର ସାମ୍ଭାବ୍ୟ ଆଶଙ୍କା । ସୁନ୍ଦରୀ ଝିଅମାନେ ବିଷ ହଳାହଳ ଓ



Digitized by srujanika@gmail.com

ମହାକାଶର ବିସ୍ମୟ ବ୍ଲାକ୍ ହୋଲ୍ ଯେଉଁଠି ସବୁ ଶୋଷି ହୋଇଗଲାପରେ ବି ପୁଣି ଶୋଷଣ ଅପେକ୍ଷାରେ ଥିବା ଲହଲହ ଜିଭ. ସୁନ୍ଦରୀ ଝିଅଙ୍କ ପାଇଁ ବ୍ରହ୍ମା ମର୍ତ୍ତ୍ୟରେ ପୂଜା ପାଇବାରୁ ବଞ୍ଚିତ ହୋଇଛନ୍ତି. ମହିଷାଶୁରର ପ୍ରାଣ ହାନୀ ଘଟିଛି. ରାମାୟଣରେ ରାବଣ ଭଳି ଟ୍ୟାଲେଣ୍ଟର ଘଟିଛି ଅବସାନ. ଇତିହାସର ଅଗଷ୍ଟସ୍ ସିଜର ଓ ଜୁଲିୟସ ସିଜରଙ୍କ ଭଳି ମହା ଯୋଦ୍ଧାଙ୍କର ଘଟିଛି ପରାଜୟ. ବିଲ୍ କ୍ଲିଣ୍ଟନ୍, ଜନ୍ କେନେଡ଼ିଙ୍କ ଭଳି ଦକ୍ଷ ଆମେରିକୀୟ ରାଷ୍ଟ୍ରପତି ହୋଇଛନ୍ତି ବଦନାମ୍ । ଆଉ ଏହି ସ୍କଲାର ଦ୍ୱୟ ସୀମାନ୍ତଟା ମଧ୍ୟ ଘାଣ୍ଟି ହଉଛି ସେହି ସୁନ୍ଦରୀ ଝିଅ ପାଇଁ ।

ସୀମାନ୍ତ ଓ ତବ୍‌ଲୁ ଦୁହେଁ ଯେତେ ଭଲ ସାଙ୍ଗ ହେଲେ ବି ଝିଅ ମ୍ୟାଟରରେ ସେମାନଙ୍କର ପାର୍ଥକ୍ୟ ମତ ରହିଛି । ଏହାକୁ ନେଇ ସେମାନଙ୍କର ଅଲଗା ଅଲଗା ଦର୍ଶନ ।

ଅପେକ୍ଷା ରାୟ ସହରର ସବୁଠୁ ସୁନ୍ଦରୀ ବୋଲି ସୀମାନ୍ତର ଯୁକ୍ତି । ଅପେକ୍ଷା ରାୟ ମଡର୍ଣ୍ଣ ଓ ଲିବରାଲ୍ । ସେ ସହର ତଥା ୟୁନିଭର୍ସିଟିର ପ୍ରାଉଡ୍ । ସେ ପିନ୍ଧେ ଜିନ୍‌ସ ଓ ସ୍ଲିଭଲେସ୍ । ତା ଗହମ ରଙ୍ଗର ମୁହଁରେ ଥର୍ ମରୁଭୂମିରେ ଖଜୁରୀ ଗଛ ପରି ଉଠିଥାଏ କାଁଭାଁ ଗୋଟିଏ ଦୁଇଟି ଅତି ବିରଳ ଓ ବହୁ ମୂଲ୍ୟବାନ୍ ବ୍ରଣ । ସେ ସବୁ ପୁଅଙ୍କ ସହ ନିସଙ୍କୋଚରେ ମିଶିପାରେ । ସେ ଟ୍ୟାଲେଣ୍ଟ । ସେ ଜିନିୟସ୍ । ପଢେ ୟୁନିଭର୍ସିଟିରେ । ଷଷ୍ଠ ବର୍ଷ ସୋସିଓଲୋଜିର ଛାତ୍ରୀ । ଯିବାଆସିବା କରେ କାର୍‌ରେ । କଥାବାର୍ତ୍ତା ମିକ୍ସ ଇଂଲିଶରେ । ସପ୍ତାହକୁ ସାତ ଥର ବଦଳାଏ ତା ବାସ୍ନା ଦେହରୁ ପୋଷାକ । ଆଇସ୍‌କ୍ରିମ୍ ଖାଏ ପାର୍ଲରରେ । ଫିସ୍ ଫିସ୍ ହସେ ଟି-ସାର୍ଟ, କଟନ୍ ଜିନ୍‌ସ ପିନ୍ଧା ଡେଙ୍ଗା ପିଲାଙ୍କ ସହ ପାର୍କରେ । ଆଖି ନଚେଇ ଓ ମାଢି ଦେଖେଇ କଥା ହୁଏ ବୟ୍ ଫ୍ରେଣ୍ଡଙ୍କ ସାଥୀରେ ରେଷ୍ଟୁରାଣ୍ଟରେ ।

ଅପେକ୍ଷା ରାୟ କ୍ଲାସ୍‌କୁ ଆସିଲେ ଚହଲି ଉଠେ ସମାଜ ବିଜ୍ଞାନର ଶ୍ରେଣୀ ଗୃହ । ବଢିଯାଏ ହାର୍ଟ୍ ବିଟ୍ ସବୁ ସୋସିଓଲୋଜି ଛାତ୍ର ଓ ଯୁବ ଅଧ୍ୟାପକଙ୍କର । ସ୍ୱପ୍ନ ବିଭୋର ହୋଇ ପଡେ କ୍ଲାସ୍‌ର ବେଞ୍ଚ, ଡେସ୍କ ଓ ଝର୍କା, କବାଟ । କ୍ଲାସ୍‌ରୁ ଫେରିଲେ ବେସ୍ତ ହୋଇପଡେ ୟୁନିଭର୍ସିଟିର କ୍ୟାମ୍ପସ । ଅପେକ୍ଷା ରାୟ ଷ୍ଟାଇଲିସ । ସୀମାନ୍ତକୁ ଅପେକ୍ଷା ରାୟର ଏହି ଷ୍ଟାଇଲ୍ ବହୁତ ପସନ୍ଦ । ଅପେକ୍ଷା ରାୟ କିନ୍ତୁ ଟିଟିଲାଗଡର ତାପମାତ୍ରାଠାରୁ ଅଧିକ ଉତ୍ତପ୍ତ ପୁଣି ଦାରିଂବାଡିର ସ୍ନୋ ଫଲ୍ ଭଳି ରିମ୍‌ଝିମ୍ ଓ ଶୀତଳ । ଯେଉଁଠି ପ୍ରଚଣ୍ଡ ରୌଦ୍ର ତାପରେ ଅଂଶୁଘାତ ମୃତ୍ୟୁର ଆଶଙ୍କା ସହିତ ଅତ୍ୟଧିକ ଥଣ୍ଡାଜନିତ କୋଲାପ୍‌ସ ମୃତ୍ୟୁର ସମ୍ଭାବନା ଅଧିକ । ସେମିତି ଏକ ଝିଅର କନ୍‌ସେପ୍‌ଟ ହେଉଛି ଅପେକ୍ଷା ରାୟ । ଅପେକ୍ଷା ରାୟ କାହାକୁ ଅପେକ୍ଷା କରେନି । ନିଜକୁ ମଧ୍ୟ କେବେ ନୁହେଁ । ସବୁବେଳେ ବେସ୍ତ କୌଣସି ନା କୌଣସି କାମରେ । ଅପେକ୍ଷା ରାୟ ଇକନମିକ୍ ଆଉ ସୋସିଆଲ୍ ବି ।

କ୍ୟାମ୍ପସ ହେଉ କି ପାର୍କ; ପୁଅଙ୍କ ସହ ହସିହସି କଥା ହେଉଥିଲାବେଳେ ସୀମାନ୍ତକୁ କିନ୍ତୁ



Digitized by srujanika@gmail.com

ଅପେକ୍ଷା ବହୁତ ଭଲ ଲାଗେ । ତେବେ ଅପେକ୍ଷା କେବେ ବି ସୀମାନ୍ତ ସହ କଥା ହୋଇନି । ସୀମାନ୍ତ ଅନେକ ଥର ଚେଷ୍ଟା କରିଛି ଅପେକ୍ଷା ରାୟ ସହିତ କଥା ହେବ । କିନ୍ତୁ ତାହା ସମ୍ଭବ ହୋଇ ପାରିନି । ତେବେ ବି ଅପେକ୍ଷା ରାୟକୁ ଖାଲି ଟିକେ ଦେଖି ଦେଇପରେ ସୀମାନ୍ତ ନିଜକୁ ବେଶ୍ ଭାଗ୍ୟବାନ୍ ଓ ଜଣେ ନିଷ୍ଠାବାନ୍ ଭକ୍ତ ଭାବି ଖୁସିରେ ଆତ୍ମହରା ହୋଇପଡେ ।

ଅପେକ୍ଷା ରାୟକୁ ନେଇ ସୀମାନ୍ତ ଓ ଡବ୍‌ଲୁ ମଧ୍ୟରେ ହୋଇଛି ଅନେକ ତର୍କ, ଅନେକ ଯୁକ୍ତି, ଅନେକ କଥା କଟାକଟି । ସୀମାନ୍ତ ମତରେ ଅପେକ୍ଷା ରାୟ ହେଉଛି ସହରର ରାଣୀ । ରାଣୀ ମହୁମାଛି । କୋହିନୂର ହୀରା । ଗ୍ୟାମୁଲା ସ୍ୟମନ୍ତକ ମଣି । ତା ପାଇଁ ସହରର ଷ୍ଟାଟସ ବଢ଼ିଛି । ୟୁନିଭର୍ସିଟି ସେଭଳି ସୁନ୍ଦରୀ ଝିଅଙ୍କ ପାଇଁ ଗର୍ବିତ । ସେ କେବଳ ଝିଅ ନୁହେଁ । ୟୁନିଭର୍ସିଟିର ହାର୍ଟ ବିଟ୍ । ସେ ଯୋଗ ଦିଏ ସହରର ବଡବଡ ପାର୍ଟି, ଫଙ୍କ୍‌ସନ ଆଉ ସେମିନାର୍‌ରେ । ତାର ସହରରେ ଅନେକ ପୁରୁଷ ବନ୍ଧୁ । ଅପେକ୍ଷା ରାୟ ସହରର ଏକ ବ୍ରାଣ୍ଡ୍ ନେମ୍ ।

ସେ ସାହାରାର ମରୁଦ୍ୟାନ ଓ ଲବଙ୍ଗର ଦୀପ ଜାଞ୍ଜିବର । ସେ ଇଣ୍ଡୋନେସିଆର ପୂର୍ବାହ୍ଣ ଓ ଲଣ୍ଡନ୍‌ର ଅପରାହ୍ଣ । ସେ ରାଜସ୍ଥାନର ଥର୍ ଓ ଆସାମର ଚେରାପୁଞ୍ଜି । ଅଧିକ ବର୍ଷା ଓ ବର୍ଷଣମୁଖର ଅପରାହ୍ଣ । ବର୍ଷା ଦିନର ଗାଁ ଦାଣ୍ଡରେ ପିଲାମାନେ ଭସାଉଥିବା କାଗଜ ଡଙ୍ଗା ଓ କୁହୁଡି ଘେରା ପାହାନ୍ତା । ସେ ଶୀତ ସକାଳ ଓ ଖରାଦିନ ସନ୍ଧ୍ୟା । ସେ ନିରୀହ କପୋତ ଭଳି ନରମ, କୋମଳ ଏବଂ ସିଂହୀ ପରି ହିଂସ୍ର ଓ ସ୍ୱାଧୀନ । ସେ ଗୋଲାପୀ ସହର ଜୟପୁର ଓ ହାଇଟେକ୍ ସିଟି ହାଇଦ୍ରାବାଦ୍ । ସେ ଡା ଭିନ୍‌ସର ମୋନାଲିସା ଓ ପିକାସୋଙ୍କ ଛେଳି । ସେ ରମାକାନ୍ତଙ୍କ ଶ୍ରୀରାଧା ଓ ପ୍ରତିଭାଙ୍କ ଯାଜ୍ଞସେନୀ । ସେ ବି ଗୋପୀ ମହାନ୍ତିଙ୍କ ମାଟି ମଟାଳ । ସେ ସାତକୋଶିଆର ମହାନଦୀ ଓ ଚିଲିକାର କାଳିଜାଇ । ସେ କୁଆଁର ପୁନେଇର ଶୀତଳ ଜହ୍ନ ଓ ବୈଶାଖ ମଧ୍ୟାହ୍ନର ତତଲା ଡ଼ହଡ଼ହ ସୂର୍ଯ୍ୟ ।

ଅପେକ୍ଷା ରାୟକୁ ନେଇ ସୀମାନ୍ତ ଡବ୍‌ଲୁ ମଧ୍ୟରେ ହୋଇଛି ତର୍କ । ତର୍କରୁ ଗଣ୍ଡଗୋଳ । ଗଣ୍ଡଗୋଳରୁ ହାତାହାତି । ହଷ୍ଟେଲରେ ଦୁହେଁ ଅଲଗା ଅଲଗା ରୁମ୍‌ରେ ରହିଛନ୍ତି । ସୀମାନ୍ତ କେବେ ଡବ୍‌ଲୁ ମୁହଁକୁ ଚାହିଁନି । ଡବ୍‌ଲୁ ବି କେବେ ସୀମାନ୍ତ ମୁହଁକୁ ଚାହିଁନି । ଏହି ଘଟଣାକୁ ନେଇ ହଷ୍ଟେଲରେ ଚର୍ଚ୍ଚା ହୋଇଛି । ପିଲାମାନେ ଆଶ୍ଚର୍ଯ୍ୟ ହୋଇଛନ୍ତି । ସୂର୍ଯ୍ୟ କେବେ ଭୁଲରେ ପଶ୍ଚିମ ଦିଗରେ ଉଦୟ ହୋଇ ଯାଇ ପାରନ୍ତି କିନ୍ତୁ ସୀମାନ୍ତ ଡବ୍‌ଲୁ ମଧ୍ୟରେ ଥିବା ବନ୍ଧୁତ୍ୱ କେବେ ବି ଅଲଗା ହୋଇ ନପାରେ ବୋଲି ଭାବୁଥିବା ୟୁନିଭର୍ସିଟି ପିଲାଙ୍କୁ ଏହା ସ୍ୱୀକାର କରିବାକୁ ପଡିଛି ।

ଅପେକ୍ଷା ରାୟ ସୀମାନ୍ତ ପାଇଁ ଏକ ଦୀପ୍ତିମୟୀ ଆଲୋକବର୍ତ୍ତିକା । ସମସ୍ତ ବିସ୍ମୟର ପୂର୍ଣ୍ଣ ପରିଭାଷା । ଦେବୀ ଦୁର୍ଗାଙ୍କର ଏକ ବିକଳ୍ପ ପରିକଳ୍ପନା । ଅପେକ୍ଷା ରାୟ ସେମିତି ଏକ ରେୟାର୍ କଲେକ୍‌ସନ୍ ଏ ସମଗ୍ର ସହରର । ତେବେ ଅପେକ୍ଷା ରାୟ ସମ୍ପର୍କରେ ଯିଏ ବି କଟୁ ମନ୍ତବ୍ୟ ଦେଇଛି



Digitized by srujanika@gmail.com

ସୀମାନ୍ତ ତାହା ସହ ଝଗଡା କରିଛି । ସମ୍ପର୍କ ତୁଟେଇ ଦେଇଛି ।

ଘଟଣାଟି ଥିଲା ଏମିତି । ଅପେକ୍ଷା ରାୟ ସହରର ଜଣେ ପ୍ରତିଷ୍ଠିତ ରାଜନୈତିକ ନେତାଙ୍କ କାର୍‌ରେ ବସି ଯାଉଥିବା ବେଳେ ସେମାନେ ପରସ୍ପରଙ୍କୁ ଚୁମାଚୁମି ହେଉଥିବାର ଡବ୍‌ଲୁ ନିଜ ଆଖିରେ ଦେଖିଥିବା କଥା ସୀମାନ୍ତକୁ କହିଥିଲା । ଏବଂ ଏହା ପରେ ସେମାନେ ସହରର ଏକ ଷ୍ଟାର୍ ହୋଟେଲକୁ ଯାଇଥିଲେ । ସେତେବେଳେ ସମୟ ଥିଲା ରାତି ଦଅଣ୍ ମଧ୍ୟରେ । ରାତିରେ ଏକ ଝିଅ ଅନ୍ୟ ପୁରୁଷଙ୍କ ସହ ଏମିତି ଖୋଲାଖୋଲି ବୁଲିବାଟାକୁ ଡବ୍‌ଲୁ ସହ୍ୟ କରିପାରି ନଥିଲା । ବିଶେଷକରି ତାର ବନ୍ଧୁ ସୀମାନ୍ତ ଯେଉଁ ଝିଅ ପାଇଁ ପାଗଳ ହୋଇ ପଡୁଛି ସେହି ଝିଅର ଏମିତି ଆଚରଣକୁ ପସନ୍ଦ କରି ନଥିଲା ଡବ୍‌ଲୁ । ଏହା ସହିତ ଡବ୍‌ଲୁ ଅପେକ୍ଷା ରାୟ ସମ୍ପର୍କରେ ନାନା କଟୁ ମନ୍ତବ୍ୟ ମଧ୍ୟ ଦେବାକୁ ପଛେଇ ନଥିଲା ।

ସୀମାନ୍ତର କିନ୍ତୁ ଯୁକ୍ତି ଥିଲା ଏହା ହେଉଛି ଧନୀ ଝିଅମାନଙ୍କର ଷ୍ଟାଟସ୍ ସିମ୍ବଲ। ଯେଉଁମାନେ ଏହି ଲିବରାଲିଟି ଆଉ ମଡର୍ଣ୍ଣିଟିକୁ ଗ୍ରହଣ କରି ନ ପାରନ୍ତି ସେମାନେ ଭୀରୁ ଓ ଅସହିଷ୍ଣୁ । ଏଇଥିପାଇଁ ସୀମାନ୍ତ ଅର୍ଥୋଡକ୍ସ ଲୋକଙ୍କୁ ଘୃଣା କରେ । ସୀମାନ୍ତ କହିଥିଲା ଅପେକ୍ଷା ରାୟ ସହରର ସୁନ୍ଦରୀ ଓ ଧନୀ । ତାଙ୍କର ଷ୍ଟାଟସ୍ ରହିଛି । ସେମାନଙ୍କର ବିଭିନ୍ନ ଧନୀ ବର୍ଗର ଲୋକଙ୍କ ସହ ପାରିବାରିକ ସମ୍ପର୍କ ରହିଛି । ତେବେ ଏହି ସମ୍ପର୍କକୁ ଅନ୍ୟ ଅର୍ଥରେ ନେବା ମାନେ ସେଭଳି ଏକ ଉଦାରବାଦୀ ଝିଅକୁ ଗ୍ରହଣ କରି ନ ପାରିବା ।

ଡବ୍‌ଲୁ କିନ୍ତୁ ସୀମାନ୍ତର ଏ ଯୁକ୍ତିକୁ ଗ୍ରହଣ କରି ନଥିଲା । ସେ କହିଥିଲା ଅପେକ୍ଷା ରାୟ ହେଉଛି ଏକ ଜେଣ୍ଟିଲ୍ ପ୍ରଷ୍ଟିଚ୍ୟୁଟ୍ । ମ୍ୟାଟେରିଆଲିଷ୍ଟିକ୍ । ତାର ଅଧିକ ଟଙ୍କା ଦରକାର । ସେ କେବଳ ସେହି ନେତା ନୁହେଁ ବରଂ ସହରର ବହୁ ଧନୀ ଲୋକଙ୍କ ସାଥୀରେ ରାତ୍ରିଯାପନ କରୁଛି ।

ଏହା ଶୁଣିବା ପରେ ସୀମାନ୍ତ ଡବ୍‌ଲୁ ଉପରେ ଉତ୍ତ୍ୟକ୍ତ ହୋଇ ପଡିଥିଲା । ତାକୁ ତା ଘରୁ ଧକ୍କା ମାରି ବାହାର କରି ଦେଇଥିଲା । ଏବଂ ଏହି ଘଟଣା ପରେ ସୀମାନ୍ତର ମୁଣ୍ଡ ଧୀରେଧୀରେ ଖରାପ ହୋଇଯିବାକୁ ଆରମ୍ଭ କରୁଥିଲା । ସେ ଅପେକ୍ଷା ରାୟକୁ ଖୋଜୁଥିଲା ।...

...ଅପେକ୍ଷା ରାୟ ପାଇଁ ଶେଷରେ ସୀମାନ୍ତ ପାଗଳ ହୋଇ ଯାଇଛି । ରାସ୍ତାରେ ବୁଲି ବୁଲି ଅପେକ୍ଷା ରାୟକୁ ଅପେକ୍ଷା କରିଛି । ଅପେକ୍ଷା ରାୟକୁ ପାଇବାକୁ ହେଲେ କେଉଁ ମହାଦେବଙ୍କୁ କିମ୍ବା କେଉଁ ଦେବୀଙ୍କୁ ପୂଜା କରିବାକୁ ହେବ ଭାବିଛି । ଅପେକ୍ଷା ରାୟ ତା ପାଇଁ ନିଜେ ତ ସ୍ୱୟଂ ଦେବୀ । ତାକୁ ଛାଡି ସେ ଆଉ ଅନ୍ୟ କେଉଁ ଦେବୀଙ୍କୁ ବା ପୂଜା କରିପାରେ? କାହାର ବା ସାନିଧ୍ୟ ଲାଭ କରିପାରେ?

ଅପେକ୍ଷା ରାୟର ଉଦାରତାକୁ ଅନ୍ୟମାନେ କାହିଁକି ସହ୍ୟ କରିପାରନ୍ତି ନାହିଁ ଭାବି ଆଶ୍ଚର୍ଯ୍ୟ ହୋଇଛି ସୀମାନ୍ତ । ଏବଂ କ୍ରମଶଃ ଅଧିକ ପାଗଳ ହୋଇ ଯାଇଛି । ପାଗଳ ହୋଇଯିବା ପରେ



Digitized by srujanika@gmail.com

ଅଧିକ ସିଗାରେଟ ଓ ମଦ ପିଇଛି । ଅଧିକ ହସିଛି ଓ ଅଧିକ କାନ୍ଦିଛି । ବାପାଙ୍କୁ ଅଧିକ ପଇସା ପଠାଇବାକୁ ଲେଖିଛି । ବାପା ଭାବିଛନ୍ତି ସୀମାନ୍ତ କ'ଣ ପାଗଳ ହୋଇଯାଇଛି ନା ତା ମୁଣ୍ଡଫୁଣ୍ଡ ଖରାପ ହୋଇ ଯାଇଛି । ସେ ତ କେବେ ଏତେ ଟଙ୍କା ଆବଶ୍ୟକ କରେନା । ବଦ ଖର୍ଚ୍ଚ କେବେ ବି କରେନା । ପ୍ରକୃତରେ ତାର କଣ ହୋଇଛି ବୋଲି ବାପାଙ୍କୁ ଚିନ୍ତା ଘାରିଛି ।

ଏହି ସମୟରେ ଏକ ପ୍ରମୁଖ ଖବର କାଗଜରେ ଗୋଟିଏ ସାଂଘାତିକ ଖବର ପ୍ରକାଶ ପାଇଥିବା ଡବ୍‌ଲୁର ନଜର ପଡିଛି ।

ସହରର ଏକ ଷ୍ଟାର୍ ହୋଟେଲରୁ ଜଣେ ଦେହଜୀବୀ ସମେତ ସମ୍ପୃକ୍ତ ଗ୍ରାହକକୁ ପୋଲିସ ଗିରଫ କରିଛି । ଏହି ସେକ୍ସ ର୍‍ୟାକେଟର ରାଣୀ ମହୁମାଛିକୁ ପୋଲିସ ଗିରଫ କରିବା ପରେ କୋର୍ଟ ଚାଲାଣ କରିଛି । ସେଇ ରାଣୀ ମହୁ ମାଛି କିଏ ହୋଇଥିବ ତାହା ଡବ୍‌ଲୁ ଚିନ୍ତା ବି କରି ପାରୁନି । ଖବର କାଗଜରେ ପ୍ରକାଶ ପାଇଥିବା ରଙ୍ଗୀନ୍ ଫଟୋଟିରେ ଅପେକ୍ଷା ରାୟର ଭୂମି ଆଡକୁ ନଇଁ ପଡ଼ିଥିବା ମୁହଁ ଡବ୍‌ଲୁକୁ କ୍ରମଶଃ କଳା ଓ ଧୂଆଁଳିଆ ଦେଖା ଯାଉଛି । ଅପେକ୍ଷା ରାୟ, ଯିଏ କି ସହରର ସବୁଠୁ ସୁନ୍ଦରୀ ଝିଅ । ସହରର ଷ୍ଟାଟସ । ଏକ ଲିବରାଲ୍ ମତର୍ଣ୍ଣିଟିର ବିରଳ ଏକ୍‌ଜାମ୍ପଲ । ସେଇ ଅପେକ୍ଷା ରାୟ । ବିଚାରୀ ।

ସେତେବେଳକୁ ସୀମାନ୍ତ ସମ୍ପୂର୍ଣ୍ଣ ଭାବେ ପାଗଳ ହୋଇ ଯାଇ ସାରିଥାଏ ।

ରାସ୍ତାଘାଟରେ ବୁଲୁଥାଏ ।

କାହାକୁ ବି ଭଲକି ଚିହ୍ନି ପାରୁନଥାଏ ।

ଚିରା ପେଣ୍ଟ ସାର୍ଟ ପିନ୍ଧି ଖାଲି ହସୁଥାଏ ଓ ଇଂଲିଶରେ କଥାବାର୍ତ୍ତା କରୁଥାଏ ।

ତେବେ ସୀମାନ୍ତ ବି ଏହି ମୁଖା ପିନ୍ଧା ଭଦ୍ରଲୋକଙ୍କ ଭଳି ଟଙ୍କା କେତେ ହଜାର ଖର୍ଚ୍ଚ କରି ପାରିଥିଲେ ହୁଏତ ସେ ବିଚରା ପାଗଳ ହେବାରୁ ବଞ୍ଚିତ ହୋଇ ଯାଇପାରି ଥାଆନ୍ତା ବୋଲି ଡବ୍‌ଲୁ ଚିନ୍ତା କରୁଥିଲା ।

ସମୟ ସେତେବେଳକୁ ଅତିକ୍ରାନ୍ତ ହୋଇ ସାରିଥିଲା...

ଗୋଟେ ଦୀର୍ଘଶ୍ୱାସ ଡବ୍‌ଲୁର ଛାଡି ଦେଇ ଚାଲି ଯାଉଥିଲା...

□



Digitized by srujanika@gmail.com

ଛୋଟ ପିଲା ଭାବି ସେ ମୋତେ ସବୁବେଳେ ଅସ୍ୱୀକାର କରିଛି । ମୋର ସମସ୍ତ କାର୍ଯ୍ୟକଳାପ କେବଳ ତାକୁ ପିଲାଳିଆମୀ ଲାଗିଛି । ମୋତେ ନେଇ ସେ କେବେବି ସିରିୟସ୍ ହୋଇପାରିନି । ତାହା ହିଁ ତ ଦୁଃଖ ।

ନୀତୁ ଅପା ସହ କଟିଛି ମୋର ସାରା ପିଲାଦିନ । ଖଟରେ ନୀତୁ ଅପା ଓ ମୁଁ ଏକା ସାଙ୍ଗରେ ଶୋଇଛୁ । ପାଖାପାଖି । ନିଦ ବାଉଳାରେ ମୁଁ ତା ସ୍ୱପ୍ନିଳ ଛାତିରେ ହାତ ରଖିଛି । ସେ ଥିର୍ କରି ମୋ ହାତକୁ ତା ଛାତିରୁ ଉଠାଇ ତଳେ ଥୋଇଛି। ତା ପ୍ରିୟ ପତଳା ଅଣ୍ଟା ଉପରେ ଗୋଡ ପକାଇଛି ଅନେକବାର । ଗୋଡକୁ ଉଠାଇ ତଳେ ରଖିଛି । ତାକୁ କୁଣ୍ଢେଇ ଶୋଇଛି । ସେ ବି ମୋତେ ତା ଉଷୁମ୍ କୋଳକୁ ଆଉଡି ନେଇଛି । ମୋ ଗାଲକୁ ଚିପି କହିଛି ଦୁଷ୍ଟ ଟୋକା! ମୁଁ ତା ଗୋଲାପୀ ଗାଲରେ ଚୁମା ଦେଇଛି । ସେ କେବେବି ଆଶ୍ଚର୍ଯ୍ୟ ହୋଇନି । ଆଶ୍ଚର୍ଯ୍ୟ ହେବାଟା ଯଦିଓ ତାର ଶୋଭାକୁ ବୃଦ୍ଧି କରିବାରେ ସହାୟକ ହୋଇଥାଆନ୍ତା ତେବେ ତାହା ସମ୍ଭବପର ହୋଇପାରିନି ।

ବୟସରେ ସେ ମୋଠୁ ପାଞ୍ଚ ବର୍ଷ ବଡ଼ । ସେ ଏକ ଅସମ୍ଭବ ଗପର ନାୟିକା । ସେ ମୋ ଗେହ୍ଲି ନୀତୁ ଅପା । କେବଳ ମୋର ନୁହେଁ, ମୋ ବାପା ବୋଉଙ୍କର ସୁନା ଝିଅ ନୀତୁ । ସୁନା ନାକି ନୀତୁ । ହସକୁରୀ ନୀତୁ । ସ୍ୱପ୍ନର ନୀତୁ । ଲାସ୍ୟମୟୀ ନୀତୁ । ଛନ୍ଦମୟୀ ନୀତୁ । ମୁଁ ତାର ଏକମାତ୍ର ଟିକି ଭାଇ । ଗେହ୍ଲା ଭାଇ । ଦୁଷ୍ଟ ଭାଇ ।

ପିଲାଟି ବେଳୁ ସେ କେବଳ ମୋତେ ଆକଟ କରି ଆସିଛି ! ଗୁଡୁ ପାହାଚ ତାଳ ଗଛ କରିଛି । ସୁନା ଗଡିଆରେ ବୁଡେଇଛି । ଘୁଅ ଗଡିଆରେ ବୁଡେଇ ପାରିନି । ନାନା ବାୟା ଗୀତ ବୋଲି ସେ ମୋତେ ଶୁଆଇ ଦେଇଛି । ମୋ ଆଙ୍ଗୁଟିରେ ଟିପା ମାରିମାରି ବୋଲିଛି ଇଟିଲି ମିଟିଲି ଡାମ ଚିଲିଚିଲି କାଇଁଚ କାକୁଡି ପିତା ନଳିତା । ଶିଙ୍ଗ ପାନିଆରେ ମୋ ମୁଣ୍ଡ କୁଣ୍ଡେଇ ଦେଇଛି । ମୋ ଗାଲକୁ ଚିପିଛି । କାଳିଆ କୁତୁରୁ କାଳିଆ କୁତୁରୁ କରିଛି । ମୋତେ ହାତ ଧରି ସ୍କୁଲକୁ ନେଇଛି । ମୋତେ ବଣକୁ ବୁଲେଇ ନେଇଛି । ପଣସ ପତର ପାରି ଶୋଇଛୁ । ବାଘ ଆସିଲେ ଡରିବୁନି ବୋଲି କହିଛି । ମୁଁ ଆଦୌ ଡରିବିନି ବୋଲି ତାକୁ ପ୍ରତିଶ୍ରୁତି ଦେଇଛି । ମୋ ଆଖିକୁ ସେ ଜୋର୍ କରି ଫୁଙ୍କିଛି । ମୁଁ ଡରି ଯାଇଛି । ସେ କିରିକିରି ହୋଇ ହସିଛି । ଡରିଗଲୁ ଡରିଗଲୁ କହି ଗୋଡ କଚାଡି ନାଚିଛି । ତା ପାଦର ପାଉଁଜି ଝଣଝଣ କରିଛି । ମୁଁ ରୋମାଞ୍ଚିତ ହୋଇଛି । ମଗ୍ନ ହୋଇଛି । ଦ୍ରବୀଭୂତ ହୋଇଛି ।

ପିଲାବେଳେ ମୋତେ ସେଇ ଶିଉଳି ଲଗା ପଥର ଉପରେ ଗାଧୋଇ ଦେଇଛି । ଗାଧୋଇ ସାରିବା ପରେ ଦେହରେ ପାଉଡର ଲଗେଇ ଦେଇଛି । ଆଖିରେ କଜଳ ଲଗେଇ ଦେଇଛି । ଡାଆଣୀ ହାଇସ ନ କରିବା ପାଇଁ ମୋ ମୁଣ୍ଡରେ କଜଳ ଟୋପି ପିନ୍ଧେଇ ଦେଇଛି । ଆଖିରେ କଜଳ



Digitized by srujanika@gmail.com

ଲଗେଇ ହେବାଟାକୁ ଯଦିଓ ମୁଁ ବିଗିଡେ ତେବେ ସେ ଜବରଦସ୍ତ ଏହି କାର୍ଯ୍ୟ କରିବାକୁ ପସନ୍ଦ କରିଛି । ଗାଧୋଇବା ବେଳେ ବାପାଙ୍କର ସେଇ ନାଲି ଗାମୁଛାରେ ଘସିଘସି ମୋ ଦେହରୁ ମଳି ଛଡେଇଛି ।

ଶିଉଳିରେ ଗୋଡ ଖସିଯିବ ବୋଲି ମୋତେ ସତର୍କ କରିଛି । ଶିଉଳିକୁ ମୋର ପିଲାବେଳୁ ଭୟ । ଏଇ ନୀତୁ ଅପାଟା ମୋତେ ଶିଉଳିକୁ ଡରିବା ଶିଖେଇଛି । ଶିଉଳିକୁ ଡରିବା ବି ସ୍ୱାଭାବିକ । ଶିଉଳିରେ ଗୋଡ଼ ଦେଲେ ଗୋଡ ଖସିଯିବ ବୋଲି ସେ ମୋତେ କେତେବାର ସତର୍କ କରେଇଛି ।

ଓଃ, ନୀତୁ ଅପାଟା ଭାରି ଚାଲାକ୍ । ସେଇଥିପାଇଁ ତାର କେବେବି ସେଇ ଶିଉଳି ଲଗା ପଥର ପାହାଚରେ ପାଦ ଖସି ଯାଇନି । କାହିଁକି ପିଲାମାନଙ୍କର ଗୋଡ ଖସେ ଓ ବଡ଼ମାନଙ୍କର ଖସିଯାଏନି ସେ ସମ୍ପର୍କରେ ନୀତୁ ଅପାକୁ କହିଛି । ନୀତୁ ଅପା କିନ୍ତୁ ତାଗିଦ୍ କରିବା ଢଙ୍ଗରେ ମୋତେ ଚୁପ୍ କରେଇ ଦେଇଛି ।

ମୋର କିନ୍ତୁ କେତେ ଥର ପାଦ ଖସି ଯାଇଛି ସେଇ ଶିଉଳି ଲଗା ପଥରରେ । ପୋଖରୀ ମଝିକୁ ଭାସିଯାଇ ହାବୁହାବୁ ହୋଇଛି । ନୀତୁ ଅପା ମୋତେ ପାଣିରୁ ଟେକି ଆଣିଛି । ମୁଁ ପାଣି ପିଇ ଯାଇଛି । ଛିଙ୍କିଛି । ଥଣ୍ଡା ଧରିଛି । କାଶିଛି । ନାକରୁ ସିଂଘାଣୀ ବୋହିଛି । ଜ୍ୱର ହୋଇଛି । ନୀତୁ ଅପା ମୋର ସେବା କରିଛି । ଗାଁର ଗଣିଆ ସାହୁ ଡାକ୍ତର କତିରୁ ଔଷଧ ଆଣି ଦେଇଛି । ଔଷଧ ମୋତେ ଭଲ ନ ଲାଗିଲେ ବି ଜବରଦସ୍ତ ଖୁଆଇ ଦେଇଛି । ଔଷଧ ନ ଖାଇଲେ ଜ୍ୱର ଭଲ ହେବନି ବୋଲି କହିଛି । ମୁଣ୍ଡରେ ପାଣି ପଟି ପକେଇ ମୋ ପାଖରେ ବସିଛି । ହେ, ଠାକୁରେ। ମୋ ଟିକି ଭାଇକୁ ଭଲ କରିଦିଅ ବୋଲି ଆମ ଠାକୁର ଘରେ ବସି ପ୍ରାର୍ଥନା କରିଛି । ମୋ ଜ୍ୱର ଭଲ ହୋଇ ଯାଇଛି ।

କିନ୍ତୁ ଯାହା କୁହ ପଛେ ସେଇ ଶିଉଳିକୁ ମୋର ଭାରି ଡର। ନୀତୁ ଅପାଟାର ସେଇ ଶିଉଳିକୁ ମୋଟେ ଭୟ ନ ଥାଏ । ନୀତୁ ଅପାର କାହିଁକି ସେଇ ଶିଉଳିରେ ପାଦ ଖସେନି କେଜାଣି? ଇଲୋ ବୋଉ। ଶିଉଳିରେ ଥରେ ଗୋଡ ପଡିଛି ମାନେ ଏକା ଥରେ ମଝି ପୋଖରୀରେ । ଟବଟବ ।

ନୀତୁ ଅପା ସାମ୍ନାରେ ମୁଁ ସବୁବେଳେ କେବଳ ଟିକି ପିଲାଟିଏ । ତା ପାଖରେ କେତେବେଳେ ବି ମୁଁ ସେହି ଟିକି ପିଲାରୁ ମୁକୁଳି ପାରିବାକୁ ସମର୍ଥ ହୋଇନି । ମୋର ସେତେବେଳେ ଅଷ୍ଟମ ଶ୍ରେଣୀ । ଆଉ ଦି ବର୍ଷ ପରେ ମେଟ୍ରିକ୍ ପରୀକ୍ଷା । ହାପ୍ ପେଣ୍ଟ୍ ଭିତରେ ନୂଆନୂଆ ଡଡି ପିନ୍ଧିବା ଆରମ୍ଭ କରିଛି । ଟିକେ ଟିକେ ନିଶ ବି ଉଠିଲାଣି । କେତେ ଥର ବାପା, ବୋଉ ଆଉ ନୀତୁ ଅପାଟାକୁ ଲୁଚେଇ ଲୁଚେଇ ସେଇ ନୂଆ ଗଜୁରିଥିବା ନିଶକୁ ନୂଆ ବ୍ଲେଡ୍‌ରେ ଆମ୍ପୁରିଛି । ଥରେ ନିଶକୁ ବ୍ଲେଡ୍‌ରେ ଆମ୍ପୁରୁ ଆମ୍ପୁରୁ ନାକ କଟିଯାଇ ପ୍ରବଳ ରକ୍ତ ବାହାରିଛି । 'ନାକରୁ କେମିତି ରକ୍ତ ବାହାରିଲା' ବୋଲି ନୀତୁ ଅପା ପ୍ରଶ୍ନ କରିଛି । କାଛରେ ପିଟି ହୋଇଗଲି ବୋଲି ନୀତୁ ଅପାକୁ



Digitized by srujanika@gmail.com

ଭୁଲେଇ ଦେଇଛି ।

ପ୍ରକୃତରେ ମୁଁ ବି ତ ବଡ ହୋଇଛି । ଏଇ ବଡ ହୋଇଯିବା କଥା ନୀତୁ ଅପାକୁ କହିଛି । ସେ କିନ୍ତୁ ଏହାକୁ ମାନିନି । ତାର କେବଳ ମାତ୍ର ସେଇ ଗୋଟିଏ କଥା ମୁଁ ଛୁଆଟି । କିଛି ଶିଖିନି କି କିଛି ଜାଣିନି ।

ଛୋଟ ପିଲା ଭାବି ମୋର ଅନେକ ସିରିୟସ୍‌ନେସ୍‌କୁ ହସରେ ଉଡାଇ ଦେଇଛି ନୀତୁ ଅପା । ମୋର ଅନେକ ବଡ଼ ହେବାର ଲକ୍ଷଣକୁ ଅସ୍ୱୀକାର କରିଛି ।

ମୁଁ ଅଷ୍ଟମ ଶ୍ରେଣୀରେ ପଢୁଥିଲାବେଳେ ନୀତୁ ଅପାର ପ୍ଲସ୍ ଥ୍ରୀ । ମାନେ କଲେଜ ଝିଅ । ମୁଁ ପଞ୍ଚମରେ ପଢୁଥିଲାବେଳେ ତାର ମେଟ୍ରିକ୍ । ମାନେ ହାଇସ୍କୁଲ ଝିଅ ।

ପିଲାବେଳେ ଆମେ ନିଦା ଗୁଆ ଖେଳିଛୁ । 'ଗୁଞ୍ଜୁରୁ ଗୁଞ୍ଜୁରୁ ପାନ ମହୁରୀ/କାହା ହାତେ ଅଛି ନିଦା ଗୁଆ/କହିଦେବୁ କିରେ କାଳିଆ ଭୁଆଁ' ବୋଲି ନୀତୁ ଅପା ତା ଆଣ୍ଠୁ ସନ୍ଧିରେ ନିଦା ଗୁଆକୁ ଲୁଚେଇଛି । ନିଦା ଗୁଆ ଖୋଜିଖୋଜି ମୁଁ ନୟାନ୍ତ ହୋଇଛି । ଶେଷରେ ମୁଁ ତା ଆଣ୍ଠୁକୁ ମେଲା କରି ନିଦା ଗୁଆକୁ କାଢିଛି । ନୀତୁ ଅପାର ଗୋରା ଜଂଘରେ ମୋ ହାତ ବାଜିଛି । ତା ଜଂଘ ମୋତେ ଉଷୁମ୍ ଉଷୁମ୍ ଲାଗିଛି । ମୋ ଦେହ କ'ଣ ହୋଇ ଯାଇଛି । ମୁଣ୍ଡ ଝିମ୍‌ଝିମ୍ ହୋଇଛି । ରକ୍ତ ଜମାଟ ବାନ୍ଧି ଯାଇଛି । ତଳି ପେଟ୍ ସିଜ୍ କରିଯାଇଛି । ନୀତୁ ଅପା ମୋ ଗାଲକୁ ଚିପି ଧରି ମୁଣ୍ଡ କୁଣ୍ଢେଇ ଦେଉଥିଲାବେଳେ ତା ଛାତି ମୋ ପିଠିରେ ଆଉଜି ହୋଇଛି । ମୁଁ ଶିହରିତ ହୋଇଛି । ପୋଖରୀରେ ପାଣିରେ ବୁଡିବୁଡି ଖେଳିଲା ବେଳେ ନୀତୁ ଅପାର ବତୁରା ଦେହକୁ ଧରି ପକେଇଛି । ମୋ ଦେହରେ ନିଆଁ ଲାଗି ଯାଇଛି । ମୋ ଭିତରେ ଏତେସବୁ ହୋଇଛି । କିନ୍ତୁ ସବୁ ଘଟଣାକୁ ନୀତୁ ଅପା ହସରେ ଉଡେଇ ଦେଇଛି । ତା ମତଲବରେ ମୁଁ କେବଳ ହିଁ ସେଇ ଟିକି ପିଲା ।

ନୀତୁ ଅପାର ଏଇ ମତିଗତି ଦେଖି ମୋତେ କାନ୍ଦ ମାଡିଛି । ନୀତୁ ଅପା ମୋତେ କେବେ ବି ବଡ ଭାବି ପାରିନି । ଏହା ମଧ୍ୟରେ ନୀତୁ ଅପାକୁ ନେଇ ମୋ ଭିତରେ ଅସମ୍ଭବ ଭାବେ କମ୍ପ୍ଲେକ୍‌ସିଟି ବସା ବାନ୍ଧିଲେଣି ବୋଲି ସେ ଜାଣି ପାରିନି ।

ଥରେ ନୀତୁ ଅପାକୁ ନେଇ ମୁଁ ଏକ ଅଦ୍ଭୁତ ସ୍ୱପ୍ନ ଦେଖିଛି । ନୀତୁ ଅପା ପୋଖରୀରେ ଏକା ଏକା ଗାଧୋଉଛି । ସେଠି ଆଉ କେହି ବି ନାହାନ୍ତି । ମୁଁ କଇଁଥ ଗଛ ଉହାଡରେ ଛକିଛକି ତା ଗୋରା ଦେହକୁ ଦେଖୁଛି । ନୀତୁ ଅପା ସମ୍ପୂର୍ଣ୍ଣ ଉଲଗ୍ନ ହୋଇ ଘସାମଜା କରୁଛି ତା ଗୋରା ଦେହକୁ । ମୁଁ ଲୁଚିଲୁଚି ସବୁ ଦେଖୁଛି । ଏହି ସମୟରେ ପଛପଟେ ମୋ ବୋଉ ଠିଆ ହୋଇଛି । ବୋଉକୁ ଦେଖି ମୁଁ ଜିଭ କାମୁଡି ଦେଇଛି । ମୋ ନିଦ ଭାଙ୍ଗି ଯାଇଛି । ନିଦରୁ ଉଠି ଦେଖିଲା ବେଳକୁ ଖଟରେ ମୁଁ ନୀତୁ ଅପାକୁ କୁଣ୍ଢେଇ ଶୋଇଛି । ମୋତେ ଲାଜ ମାଡିଛି । ମୁଁ ଲାଜୁଆ ହୋଇ ଯାଇଛି ଏବଂ ତା ପରଠୁ ନୀତୁ ଅପା ଅଧିକ ଅଧିକ ସୁନ୍ଦରୀ ଲାଗିଛି ।



Digitized by srujanika@gmail.com

ନୀତୁ ଅପାର ଓଠ ଅଧିକ ଲାଲ୍ ହୋଇଛି । ରକ୍ତ ମନ୍ଦାରଠୁ ଢେର ଗାଢ । ତା ଗାଲ ଅଧିକ ଗୋଲାପୀ ଲାଗିଛି । ବଗିଚାର ସଜ ଫୁଟା ଗୋଲାପଠୁ ଅଧିକ ସତେଜ । ତା ଛାତି ଅଧିକ ଉଚ୍ଚା ହୋଇଛି । ଧଉଳିଠୁ ଅଧିକ ପ୍ରଶାନ୍ତ ଓ ଶୀତଳ । ତା ଅଣ୍ଟା ଅଧିକ ପତଳା ଲାଗିଛି । ସାତକୋଶିଆର ମହାନଦୀଠୁ ଅଧିକ ଅଣଓସାର ଓ ସ୍ରୋତସ୍ୱିନୀ । ତା ନିତମ୍ବ ଅଧିକ ମୋଟା ଲାଗିଛି । ଚନ୍ଦ୍ରଭାଗାରେ ସୂର୍ଯ୍ୟୋଦୟଠାରୁ ଅଧିକ ଶୀତଳ ଓ ମନୋରମ । ମୋଟ ଉପରେ କହିବାକୁ ଗଲେ ନୀତୁ ଅପା ଅଧିକ ସେକ୍ସି ଲାଗିଛି । ମୁଁ ତା ଗାଲରେ ଚୁମା ଦେଇଛି । ନୀତୁ ଅପା କିନ୍ତୁ ନିଘୋଡ ନିଦରେ ଶୋଇ ରହିଛି । ମୋତେ ରାତି ସାରା ନିଦ ହୋଇନି । ନୀତୁ ଅପାକୁ ରାତି ସାରା ଘନ ନିଦ ।

ନୀତୁ ଅପା ହୋଇଛି ବଟାନୀ ପିଜିର ଛାତ୍ରୀ । ଆଉ ମୁଁ ପ୍ଲସ୍ ଟୁର ଛାତ୍ର ।

ନୀତୁ ଅପା ମୋ ହଷ୍ଟେଲକୁ ଆସିଛି । ପଢାପଢି ନେଇ ତାଗିଦ୍ କରିଛି । ମୋର ସାଙ୍ଗମାନେ ନୀତୁ ଅପାକୁ ସମ୍ମାନ କରିଛନ୍ତି । ବଡ଼ ଅପା ଭାବେ ଭକ୍ତି କରିଛନ୍ତି । ନୀତୁ ଅପା ମୋ ପାଇଁ ଇଂରାଜୀ ଟ୍ୟୁସନ୍ ଯୋଗାଡ କରିଛି । ସୋସିଓଲୋଜି ପସିବଲ୍ କିଣି ଦେଇଛି । ଗଣେଶ ସାର୍‌ଙ୍କଠାରୁ ପୁରୁଣା ନୋଟ୍ ଆଣି ଦେଇଛି । ମୋ ହଷ୍ଟେଲ୍ ଫି ଦେଇଛି । ମୋ ପାଇଁ ଟି-ସାର୍ଟ ଆଣିଛି ଓ ଜିନ୍ସ ପ୍ୟାଣ୍ଟ୍ କିଣିଛି ।

ମୁଁ ନୀତୁ ଅପାର ହଷ୍ଟେଲକୁ ଯାଇଛି । ନୀତୁ ଅପାର ସାଙ୍ଗମାନେ ମୋତେ ସେମାନଙ୍କ ଟିକି ଭାଇ ପରି ଭାବିଛନ୍ତି । ଛୋଟ ପିଲାଟା ଭାରି ସିମ୍ପଲ୍ ଓ ଇନୋସେଣ୍ଟ ବୋଲି କହିଛନ୍ତି । ପିଲାଟା କିଛି ଜାଣିନି ବୋଲି ସେମାନେ ଭାବିଛନ୍ତି ।

ପୂଜା ଛୁଟିରେ ନୀତୁ ଅପା ଓ ମୁଁ ବସ୍‌ରେ ପାଖାପାଖି ବସି ଘରକୁ ଫେରିଛୁ । ମୋର ମନେ ପଡୁଛି ଢୁଳାଉ ଢୁଳାଉ ମୁଁ ନୀତୁ ଅପା କାନ୍ଧରେ ଆଉଜି ଶୋଇ ପଡିଛି । ନୀତୁ ଅପା ମୋ ମୁଣ୍ଡରେ ହାତ ରଖି ଆଉଁସିଛି । କିନ୍ତୁ ସେ ମୋତେ ପୁଣି ଥରେ ପିଲାଳିଆ ଭାବିଛି । ମୋତେ ନେଇ କେବେବି ସିରିୟସ୍ ହୋଇନି । ଏଥିପାଇଁ ମୋତେ କାନ୍ଦ ମାଡିଛି । ନୀତୁ ଅପା କାହିଁକି ମୋତେ ବଡ଼ ଭାବୁନି, ସିରିୟସ୍ ହେଉନି କେଜାଣି?

ଏମିତି କୌଣସି ଏକ ଦୁର୍ଘଟଣା ନୀତୁ ଅପାକୁ ଅଧିକ ସିରିୟସ୍ ଓ ଗମ୍ଭୀର କରି ଦିଅନ୍ତା ସେ ସମ୍ପର୍କରେ ମୁଁ ଅଧିକ ଚିନ୍ତାଶୀଳ ହୋଇ ପଡିଛି । କ୍ରମେ ସେ ବିଷୟ ଚିନ୍ତା କରିକରି ମୁଁ ଅଧିକ ବଡ଼ ହୋଇ ଯାଇଛି ।

ନୀତୁ ଅପା ଗାଧୋଇଲା ବେଳେ ତା ଓଦା ଦେହ ମୁଁ ଦେଖିଛି । ବ୍ଲୁ ରଙ୍ଗର ବ୍ରା ତା ହଳଦିଆ ରଙ୍ଗର ପିଠିରୁ ଚମତ୍କାର ଦେଖା ଯାଉଥାଏ । ଏକ ଏକ୍ସଲେଣ୍ଟ କଲର କମ୍ବିନେସନ୍ ନୀତୁ ଅପାର ଅଙ୍ଗବସ୍ତ୍ର ଓ ଦେହ ! ଶାଢି ପିନ୍ଧିଥିବା ବେଳେ ତା ପେଟ ଦେଖିଛି । ଶିଲ୍କା ଶେଟ୍ଟୀର ପେଟ ପରି । ତା ଗଭୀର ନାହିରେ ଆଞ୍ଜୁଳାଏରୁ ଅଧିକ ପାଣି ଧରିବାର କ୍ଷମତା ରହିଛି । ଏହି କଥା ଚିନ୍ତା



Digitized by srujanika@gmail.com

କରୁକରୁ ହଠାତ୍ ତାକୁ ବାହା ହୋଇ ପଡିବାକୁ ଇଛା ହୋଇଛି । ବାହା ହବା ମାନେ ତା ସହ ସବୁ ଦିନ ଘର ସଂସାର କରି ରହିବା କିମ୍ବା ରାତିରେ ତାକୁ କୁଣ୍ଢେଇ ଧରି ଶୋଇବା ସେଇଟା ମୁଁ ବୁଝି ପାରିନି । କିନ୍ତୁ ବାହା ହବା ପାଇଁ ଇଛା ହୋଇଛି । ଚଟାପଟ୍ କିଛି ଗୋଟା ଡିସ୍କଭର କରିଦେବାକୁ ଇଛା ହୋଇଛି । କିମ୍ବା ଇନ୍‌ଭେନସନ୍ କରିବାକୁ ଆଗ୍ରହ ବଢ଼ିଛି ।

ଥରେ ମୁଁ ସାହସ କରି ନୀତୁ ଅପା ଗାଲରେ ଚୁମା ଦେଇଛି ।

ନୀତୁ ଅପା ଖୁସି ହୋଇଛି ।

ମୁଁ କହିଛି ନୀତୁ ଅପା, ତତେ ମୁଁ ଦୁନିଆରେ ସବୁଠୁ ବେଶି ଭଲ ପାଇଛି ।

ସେ ହଁ ଭରିଛି ।

ସେ କହିଛି ମୁଁ ବି ତ ମୋ ଟିକି ଭାଇକୁ ଜୀବନ ଦେଇଛି ।

ମୁଁ କହିଛି ନୀତୁ ଅପା, ତୋ ବିନା ମୁଁ ବଞ୍ଚି ପାରିବିନି ।

ସେ ବି କହିଛି ମୁଁ ମୋ ଟିକି ଭାଇଟିକୁ ଛାଡି ମୁହୂର୍ତ୍ତେ ରହି ପାରୁନି ।

ମୁଁ କହିଛି, ନୀତୁ ଅପା ତତେ ମୁଁ ପ୍ରେମ କରୁଛି ।

ନୀତୁ ଅପା କହିଛି ମୁଁ ତ ମୋ ଗେହ୍ଲା ଭାଇର ପ୍ରେମରେ ପଡିଛି ।

ନୀତୁ ଅପା ହସିଛି । ମୁଁ କାନ୍ଦିଛି । କିନ୍ତୁ ମୁଁ କାନ୍ଦୁଛି ବୋଲି ନୀତୁ ଅପା ଜାଣି ପାରିନି । ସେଇ ନ ଜାଣି ପାରିବାଟା ମୋ ପାଇଁ ସବୁଠୁ ବଡ ଦୁଃଖ ବୋଲି ଭାବି ଅସହାୟ ହୋଇ ପଡିଛି । ଥରେ କାନ୍ଦୁକାନ୍ଦୁ ନୀତୁ ଅପାକୁ ଛାତିରେ ଜାବୁଡି ଧରିଛି । ନୀତୁ ଅପା ମଧ୍ୟ ଅନୁରୂପ ମୋତେ ଆଉଜେଇ ନେଇଛି ତା ଛାତିକୁ । ମୁଁ ପୁଣି ଶିହରିତ ହୋଇଛି । ରୋମାଞ୍ଚିତ ହୋଇଛି । ମୁଣ୍ଡ ଝିମ୍‌ଝିମ୍ କରିଛି । ନୀତୁ ଅପା କେବଳ ପୁଲକିତ ହୋଇଛି । କେବଳ ଟିକି ଭାଇଟିକୁ ନେଇ ସ୍ୱପ୍ନ ଦେଖିଛି ।

ଜ୍ୟାମ୍ପସର ସେଇ କଦମ୍ବ ଗଛ ମୂଳେ ବସି ନୀତୁ ଅପା ଉଡି ଯାଉଥିବା ଚଢେଇଟିକୁ ଲକ୍ଷ୍ୟ କରୁଥିଲାବେଳେ ମୁଁ ତା ପାଖରେ ବସିଛି । ନୀତୁ ଅପା ଅନ୍ୟମନସ୍କ ହୋଇଛି । ମୁଁ ଅନ୍ୟମନସ୍କ ହୋଇଛି । କ୍ରମେ ପୃଥିବୀ ଅନ୍ୟମନସ୍କ ହୋଇ ପଡୁଛି ବୋଲି ଆମ ଉଭୟଙ୍କୁ ହୃଦୟଙ୍ଗମ ହୋଇଛି । ଆମର ଡେଣା ଲାଗି ଯାଇଛି । ଆମେ ବି ସେଇ ଚଢ଼େଇଙ୍କ ଭଳି ଆକାଶରେ ଉଡିବାକୁ ପ୍ରୟାସ କରିଛୁ । ଉଡିଛୁ । ଉଡିଛୁ । ଏବଂ କ୍ଳାନ୍ତ ହୋଇଛୁ ।

ଟିକି ଚଢ଼େଇଟି ସେମିତି ଆକାଶରେ ଉଡିଛି । ନୀତୁ ଅପା କହିଛି ଏଇ ଟିକି ଚଢେଇଟି ଭଳି ତୁ ଉଡି ଯିବୁନି କେଉଁ ଦୂର ରାଇଜ । ମୁଁ କହିଛି ତତେ ଛାଡି ମୁଁ କୁଆଡକୁ ବି ଉଡିଯିବିନି । ମୁଁ କହିଛି ମୁଁ ଟିକି ଚଢେଇ ହେଲେ ତୁ ଆକାଶ । ଆକାଶ ଛଡା ଚଢେଇଟି ବା କେଉଁଠିକୁ ଯାଇପାରିବ ବୋଲି ନୀତୁ ଅପାକୁ କହିଛି ।



Digitized by srujanika@gmail.com

ସେ କାନ୍ଦିଛି । ମୁଁ କାନ୍ଦିଛି । ସେ ତା ଆଖିରୁ ଲୁହ ପୋଛିଛି । ତା ଲାଲ୍ ଚୁନ୍ନିରେ ମୋ ଆଖିରୁ ଲୁହ ପୋଛିଛି । ସେତେବେଳେ ତା ଦେହ ମୋ ଦେହକୁ ଛୁଇଁଛି । ଗୋଟା ଝିଅ ଝିଅ ଗନ୍ଧ ମୋତେ ପାଗଳ କରିଛି । ମୁଁ ନୀତୁ ଅପାକୁ କହିଛି ଆଉ ଗୋଟା ଚୁମା ଦେବି । ସେ କହିଛି ହଁ ଦେ । ମୁଁ ଦେଇଛି । ସେ ନେଇଛି ।

ନୀତୁ ଅପା ମୋ ସମ୍ପର୍କୀୟ ମାଉସୀଙ୍କ ଝିଅ । କିନ୍ତୁ ପିଲାଟି ବେଳୁ ଆମ ଘରେ ରହିଛି । ମୋତେ ବର୍ଷେ ହୋଇଥିଲା ନୀତୁ ଅପା ଆମ ଘରକୁ ଆସିଛି । ସେହି ଦିନଠୁ ପୂରାପୂରି ଆମ ଘରେ ରହିଛି । ବାପା ନୀତୁ ଅପାକୁ ଭାରି ଗେହ୍ଲା କରନ୍ତି । ମୋ ବୋଉର ସୁନା ଝିଅ ନୀତୁ ଅପା । ମୋର ଅତି ପ୍ରିୟ ନୀତୁ ଅପା ।

ଆମେ ସାଙ୍ଗ ହୋଇ ସ୍କୁଲକୁ ଯାଇଛୁ । ପିଲାବେଳେ ଧୂଳି ଖେଳ ଖେଳିଛୁ । ମୋ କଣ୍ଢେଇ ରାଣୀ ହୋଇଛି । ତା କଣ୍ଢେଇ ରାଜା । ଆମେ ତାଙ୍କର ବାହାଘର କରିଛୁ । ଧୂଳିରେ ମିଛିମିଛିକା ଭାତ, ଡାଲି, ଖିରି, ତର୍କାରୀ କରି ସାରୁ ପତ୍ରରେ ମିଛିମିଛିକା ପରଷାପରଷି ହୋଇଛୁ । ଛୋଟଛୋଟ କପଡାରେ ଲୁଗା ପିନ୍ଧେଇ ଆମ କଣ୍ଢେଇକୁ ବୋହୂ କରି ସଜେଇଛୁ । ବାହାଘର ବେଳେ ମିଛିମିଛିକା କାନ୍ଦିଛୁ ।

କ୍ଷେତରେ ଥିବା ପଲାରେ ବସି ପରିବା ଜଗିଛୁ । ସେଇ ପଲାରେ ମୁଁ କେତେ ଥର ନୀତୁ ଅପାକୁ କୁଣ୍ଢେଇକି ଶୋଇ ଯାଇଛି । ମୁଁ ନିଜକୁ ବୟସ୍କ ବୟସ୍କ ମନେ କରିଛି । ଜାମୁ କୋଳି ତୋଳିଛୁ । ହରଡ ଛୁଇଁ ତୋଳି ଖାଇଛୁ । ଆମ୍ବ କଷି ଚଟଣୀ କରି ଖାଇଛୁ । ତେନ୍ତୁଳି ଝୋଳ କରି ହାପୁଡିଛୁ ।

ନୀତୁ ଅପା ପୁଣି ମୋତେ ପିଲା ଭାବିଛି । ଏହି ସୁଯୋଗରେ ମୁଁ ବହୁତ କିଛି ପିଲାଳିଆମୀ କାର୍ଯ୍ୟ କରି ବସିଛି । ସେ ସବୁକୁ ନେଇ ନୀତୁ ଅପା କିଛି ହେଲେ ବି ଚିନ୍ତା କରିନି କି ମନ ଦୁଃଖ କରିନି । ମୁଁ ଥମ୍‌ଥମ୍ ହୋଇଛି । ମୋ ଆଖି ଲାଲ୍ ହୋଇଛି । ମୋ ଓଠ ଥରିଛି । ମୋ ଦେହର ତୀବ୍ରତା ବଢିଛି ।

ନୀତୁ ଅପାର ହାତ ପାପୁଲିକୁ ଜୋର୍ କରି ମୁଠେଇ ଧରିଛି । ସେ ହସିଛି । ରହସ୍ୟ ହସ । ମୋନାଲିସାର ହସ । ନୀତୁ ଅପା ଦିନକୁ ଦିନ ବେଶି ଗୋରୀ ଗୋରୀ ଲାଗିଛି ।

ତା ହାତ ଆଙ୍ଗୁଠି ମୋତେ ପଦ୍ମ କଢୀ ଭଳି ମନେ ହୋଇଛି ।

ତାର ଓଠ ରକ୍ତ ମନ୍ଦାର ପରି ଚହଟିଛି ।

ଗାଲ ଗୋଲାପ ଭଳି ବାସ୍ନାମୟ ହୋଇଛି ।

ତାର ଢଙ୍ଗ ଦେଖି ମୋ ଦେହ ଝିମ୍‌ଝିମ୍ ହୋଇଛି । ମୁଁ ତାକୁ ଝିମ୍‌ଝିମ୍ ହେବା କଥା ବି କହିଛି । ସେ ହସିଛି । ତା ଆଖି ବଡବଡ ହୋଇ ଯାଇଛି । କହିଛି ପିଲାଟା! ସେ ଏଥିରେ କେବେବି



Digitized by srujanika@gmail.com

ଆଶ୍ଚର୍ଯ୍ୟ ହୋଇନି । ଗାଲକୁ ଛାଡି ମୁଁ ଥରେ ତା ଓଠରେ ଚୁମା ଦେଇଛି । ସେ ପୁଣି ଥରେ ବି ଆଶ୍ଚର୍ଯ୍ୟ ହୋଇନି । ତେବେ ମୋତେ ଏସବୁ ସ୍ୱପ୍ନ ସ୍ୱପ୍ନ ଲାଗିଛି । ନୀତୁ ଅପା ବିନା ବଞ୍ଚି ହେବ ନାହିଁ ବୋଲି ମୁଁ ତାକୁ ଜଣାଇ ଦେଇଛି । ମୋ ବିନା ସେ ବଞ୍ଚି ପାରିବ ନାହିଁ ବୋଲି କହିଛି ।

ମୁଁ ନୀତୁ ଅପାକୁ ନେଇ ଅନେକ ସ୍ୱପ୍ନ ଦେଖିଛି । ମୋ ନୀତୁ ଅପା ଏକ ରାଜ କୁମାରୀ ବେଶରେ ରାଜ ଉଆସରେ ରତ୍ନ ପଲଙ୍କରେ ଶୋଇଥିବା ବେଳେ ଏକ ଅସୁର ତାକୁ ଉଠାଇ ନେଇଛି । ମୁଁ ରାଜ କୁମାର ସାଜି ତାକୁ ଉଦ୍ଧାର କରିଛି । ତାର ସ୍ୱୟମ୍ବର ଆୟୋଜିତ ହୋଇଛି । ଶହେ ରାଜ୍ୟରୁ ବଛାବଛା ରାଜକୁମାରମାନେ ଆସିଛନ୍ତି । କିନ୍ତୁ ସେ ମୋତେ ହିଁ ପସନ୍ଦ କରିଛି । ନୀତୁ ଅପା ପାଇଁ ମୁଁ କରିଛି ଏକ ସ୍ୱପ୍ନ ମହଲ । ପୃଥିବୀର ସପ୍ତାଶ୍ଚର୍ଯ୍ୟ ମଧ୍ୟରୁ ଅନ୍ୟତମ ସେହି ଅନନ୍ୟ ମହଲ ! ନୀତୁ ଅପାକୁ ସେଇଠି ବସେଇଛି । ସେଇଠି ବସି ସେ ଉଦ୍ୟାନର ଦୃଶ୍ୟ ଉପଭୋଗ କରିଛି । ନୀତୁ ଅପାକୁ ନେଇ ମୋ ସ୍ୱପ୍ନର ଖିଅ ଲମ୍ବିଲମ୍ବି ଯାଇଛି । ଦୂରକୁ । ବହୁ ଦୂରକୁ ।

ଆମ୍ବ ତୋଳିବା ପାଇଁ ନୀତୁ ଅପା ଡାକିଛି । ସମୁଦ୍ର କୂଳକୁ ବୁଲି ଯିବାକୁ ବାଧ୍ୟ କରିଛି । ପାର୍କ ଯିବାକୁ କହିଛି । କହିଛି ମଧ୍ୟ ମନ୍ଦିର ଯିବାକୁ ।

ନୀତୁ ଅପା ଓ ମୁଁ ଜହ୍ନ ଆଲୁଅରେ ନଈ ବାଲିରେ ବସିଛୁ ।

ସେ ହସିଛି । ରହସ୍ୟ ହସ । ମୋନାଲିସାର ହସ ।

ମୁଁ କହିଛି ନୀତୁ ଅପା! ତୁ କଣ ମୋତେ ଭଲ ପାଉ?

ସେ ମୋତେ ଆଲିଙ୍ଗନ କରିଛି । ଓ କହିଛି ତୋ ବିନା ମୋତେ କିଛି ଭଲ ଲାଗେନାରେ। ତୁ ମୋ ଟିକି ଆଉ ଗେହ୍ଲା ଭାଇରେ। ତୁ ମୋ ଟିକି ହିରୋ । ତୁ ମୋ ଟିକି ପ୍ରେମିକ । ମାଇଁ ଲିଟିଲ୍ ଓଣ୍ଡର । ମାଇଁ ଲିଟିଲ୍ ହାର୍ଟ!

ନଦୀ କୂଳ କ୍ରମେ ନିର୍ଜନ ହୋଇଛି । ସନ୍ଧ୍ୟା ବହଳ ହୋଇଛି । ବଗ ବଗୁଲି ଆଧାର ଦିଆଦେଇ ହୋଇଛନ୍ତି ।

ମୁଁ ନୀତୁ ଅପାକୁ ଚୁମା ଦେଇଛି । ଛାତିରେ ଜାବୁଡି ଧରିଛି । ତା ଶାଢି ଖସେଇ ଦେଇଛି । ବ୍ଲାଉଜ୍ ବଟମ୍ ଖୋଲିଛି ।

ନୀତୁ ଅପା ପ୍ରଥମ ଥର ପାଇଁ କାନ୍ଦିଛି ।

ତା ଆଖିରୁ ଲୁହ ଦେଖି ମୁଁ ଆଶ୍ଚର୍ଯ୍ୟ ହୋଇଛି । ବୋଧେ ପ୍ରଥମ ଥର ପାଇଁ ସେ ମୋତେ ବଡ଼ ଭାବିବା ଆରମ୍ଭ କରିଛି । କିନ୍ତୁ ଏ କଥା ମୁହଁ ଖୋଲି କହିନି । ଖାଲି କାନ୍ଦିଛି । କେବଳ କାନ୍ଦିଛି ।

ମୁଁ ତା ଛାତିରୁ ବ୍ରା ପିନ୍ କାଢିଛି ।

ନୀତୁ ଅପା ଆହୁରି କାନ୍ଦିଛି ।



Digitized by srujanika@gmail.com

କଇଁ କଇଁ କାନ୍ଦିଛି ।

ସାରା ନଇ ପଠା ବାଲି ତା ଲୁହରେ ଭିଜିଛି ।

ତା କୋହରେ ମୋ ଛାତି ଥରି ଉଠିଛି ।

ନୀତୁ ଅପା ସେବେଠୁ କାନ୍ଦିଛି । କଇଁ କଇଁ ହୋଇ ଛାତି ଓଠ ଥରେଇଛି । ଲୁହ ଆଖିରୁ ଝରି ଓଠରେ ଛାତିରେ ଭିଜିଛି ।

ନୀତୁ ଅପାର କୋମଳ ଛାତି ଲୁହରେ ବତୁରିଛି । ବତୁରି ଯିବା ପରେ ତା ଛାତି ଅଧିକ ବାସ୍ପାମୟ ହୋଇଯାଇଛି ଏବଂ ପ୍ରଥମ ବର୍ଷାର ଛୁଆଁରେ ଫୁଲି ଉଠିଥିବା ମାଟିଭଳି ସ୍ୱପ୍ନପ୍ରବଣ ହୋଇ ପଡିଛି ନୀତୁ ଅପାର ଛାତି ।

ଏହି ଘଟଣା ପରେ ମୁଁ ବି କାନ୍ଦିବାକୁ ଲାଗିଛି । ଆମେ ଉଭୟ କେବଳ କାନ୍ଦିଛୁ ।

ନୀତୁ ଅପା ହଠାତ୍ କଇଁ କଇଁ ହୋଇ କହିଛି 'ତୁ ବଡ ହୋଇ ଯାଇଛୁ ରେ' । ଢେର ବଡ । ବୟସ୍କ । ଖୁବ୍ ବୟସ୍କ ।

'ତୁ ଆଉ ମୋଟେ ଛୋଟ ହୋଇ ରହିନାହୁଁ' ବୋଲି କହି ମୋ କୋଳରେ ଲୋଟି ଯାଇଛି ନୀତୁ ଅପା ।

ମୁଁ ବଡ ପାଟିରେ କାନ୍ଦିଛି ।

ମୋର ସମସ୍ତ ଶବ୍ଦର ଅପମୃତ୍ୟୁ ଘଟିଛି । ମୁଁ ଶବ୍ଦହରା ହୋଇ ଯାଇଛି ।

ମୁଁ ଅନ୍ୟ ଏକ କେଉଁ କନ୍‌ସେପ୍ଟକୁ ରୂପାନ୍ତରିତ ହୋଇଯାଇଛି ।

ନିଜକୁ ଈଶ୍ୱର ଭାବେ ଘୋଷଣା କରିବାକୁ ପଛଘୁଞ୍ଚା ଦେଇଛି । ଯଦିଓ ମୁଁ ତାକୁ କଥା ଦେଇଥିଲି ଯଦି ସେ କେବେ ସତସତିକା ଈଶ୍ୱରୀ ହୋଇଯାଏ ମୁଁ ବିଳମ୍ବ ନ କରି ନିଜକୁ ତତ୍‌କ୍ଷଣାତ୍ ଈଶ୍ୱର ଘୋଷଣା କରିଦେବି । କିନ୍ତୁ ଈଶ୍ୱର ହେବାଟା ବଡ କଷ୍ଟକର ବ୍ୟାପାର ବୋଲି ନୀତୁ ଅପାକୁ କ୍ଷମା ମାଗିଛି ।

ନୀତୁ ଅପା କାନ୍ଦିଛି । କେବଳ କହିଛି 'ତୁ ବଡ ହୋଇ ଯାଇଛୁ' । ବହୁତ ବଡ । ଯାହାକୁ ମାପି ହବନି । ଆକାଶ ଭଳି ପରିବ୍ୟାପ୍ତ ।

..କିନ୍ତୁ ଶିଉଳିରେ ପାଦ ଦେଲେ ଗୋଡ ଖସିଯିବ ବୋଲି ନୀତୁ ଅପା ହିଁ ମୋତେ ଶିଖେଇଥିଲା । ଶିଉଳିକୁ ମୋର ପିଲାଟି ବେଳୁ ଭୟ ।

□



Digitized by srujanika@gmail.com

ଆରମ୍ଭ କରୁଛି ଗପ । ଯେଉଁମାନେ ଏ ଗପ ଶୁଣିଲାବାଲା ସେମାନେ ପ୍ରଥମେ ଆଖି ବୁଜି ଦିଅନ୍ତୁ ଏବଂ ପାଞ୍ଚ ମିନିଟ୍ ବସି ନିଜ ନିଜର ଗ୍ରାମଦେବତୀଙ୍କୁ ଧ୍ୟାନ କରନ୍ତୁ । ମୁଁ ଦେଇଥିବା ମନ୍ତୁରା ତେଉଁରିଆକୁ ହାତରେ ବାନ୍ଧି ଦିଅନ୍ତୁ । ଏହି ମନ୍ତୁରା ତେଉଁରିଆ ଦେହକୁ କିଳି ଦେବ । ଆଉ ଭୂତ ପ୍ରେତ ଡାଆଣୀ, ଚିରିଗୁଣି ଯେତେ ବାତେଇ କଚାଡି ହେଲେ ବି କିଛି ବଙ୍କା କରି ପାରିବେନି । ଏହା ହେଉଛି କାଉଁରି କାମାକ୍ଷା ମନ୍ତୁରା ତେଉଁରିଆ । ବହୁ କଷ୍ଟ ପରିଶ୍ରମ ପରେ ଏ ତେଉଁରିଆ ମିଳିଛି । ଏହା ହାତରେ ବନ୍ଧା ଥିଲେ ଡାଆଣୀ, ଭୂତ ସାତ କୋଶ ଦୂରରେ ରହି ଖାଲି ଭୁକି ହେଉଥିବେ ସିନା; ଦେହରେ ସବାର ହୋଇ ପାରିବେ ନାହିଁ । ତେବେ ଗପ ଆରମ୍ଭ କରୁଛି । ଓଁ ହ୍ଲିଂ କ୍ଲିଂ କାଉଁରି କାମାକ୍ଷା.. ଆଃ.. ଫୁଃ.... ଯା ଯାରେ ଯା.. ଫୁଃ... ଯେଉଁଠୁ ଆସିଥିଲୁ ସେଇଠିକି ଯା.. ଫୁଃ... । ବାସ୍ । ଏଣିକି ଆଉ କିଛି ହେବନି । ଗପ ଆରମ୍ଭ କରୁଛି । ମନ ସ୍ଥିର କରି ଶୁଣନ୍ତୁ ।

ସେତେବେଳକୁ ରାତି ବାରଟା । ଓର୍ଥି ନଈରେ ପ୍ରବଳ ଜୁଆର । ନଈଟା ଫୁଲି ଏଠୁଁ ହୋଇ ଯାଇଥାଏ । କାଳି ଜହ୍ନିଆ ଆକାଶ । ଟିକେ ଜହ୍ନ ଆଲୁଅ ଓ ଟିକେ ଅନ୍ଧାରର ଲୁଚକାଳି ଖେଳ । ଅନ୍ଧାର ପଛରେ ଆଲୁଅ ତ କେତେବେଳେ ଆଲୁଅ ପଛରେ ଅନ୍ଧାର ଗୋଡିଆ ଗୋଡେଇ ହେଉଥାନ୍ତି । ଛୋଟବେଳେ ଗାଁ ଦାଣ୍ଡରେ ଏମିତି ଏହି ଅନ୍ଧାର ଓ ଆଲୁଅକୁ ଗୋଡରେ ମାଡି ବସିବାକୁ ଅନେକ ବାର ଚେଷ୍ଟା କରି ବିଫଳ ହୋଇଛି । କାନ୍ଦିଛି । ବ୍ୟସ୍ତ ହୋଇଛି । ବୋଉକୁ କହିଛି । କିନ୍ତୁ ବୋଉ ମୋତେ ବୁଝେଇ ଦେଇଛି । ସେମିତି କରାଯାଏ ନାହିଁ । ଜହ୍ନ ପରା ଆମ ଦେବତା! ତାର ଆଲୁଅକୁ ଗୋଡରେ ମାଡିବାକୁ ଚେଷ୍ଟା କରୁଛୁ! ଛିଃ... । ମହା ପାପ ।

ଚାରିଆଡେ ଶୁନ୍‌ଶାନ୍ । ମାନେ ଜହ୍ନ ମାମୁ ଗପ ବହିର ସେଇ ବେତାଳ କଥା ଭଳି । ନିଶା ଗରଜୁ ଥାଏ ତୁହାକୁ ତୁହା । ରାଜା ବିକ୍ରମାର୍କ କାନ୍ଧରେ ଶବକୁ ଧରି ଚାଲିଥାନ୍ତି । ଶବଟି କାନ୍ଧରୁ ତଳକୁ ଝୁଲିକି ରହିଥାଏ । ମୋତେ ଖୁବ୍ ଡର ମାଡୁଥାଏ । ଗଛର ଡାଳ କି ପତ୍ର ଟିକେ ମଡ୍ କଲାବେଳକୁ ମୋ ଛାତି ଧଡ୍ କରୁଥାଏ ।

ସେଇଠି ସେଇ ବୁଢା ବରଗଛ ଠିଆ ହୋଇଛି ।



Digitized by srujanika@gmail.com

ମୋତି ବଡ଼ଉ କହୁଥିଲା ଏହି ବରଗଛ କୁଆଡେ ଦୁଇ ଶହ କି ତିନି ଶହ ବର୍ଷର ପୁରୁଣା । ଏବେ ଗୋଟା ପଠାଣ ଭୂତ ଏହି ବରଗଛରେ ରହି ଉତ୍ପାତ କରୁଥିବା ମୁଁ ମୋତି ବଡ଼ଉଠାରୁ ଶୁଣିଥିଲି । କିନ୍ତୁ ଏଇବେଳେ ଏହା ମନ ପଡିବାର ଥିଲା! ମୋତି ବଡ଼ଉ କଥା ମନ ପଡି ଯାଉଥାଏ । କେମିତି ଏଇ ମରାଖାଇଟା ପାର ହୋଇଯିବ ଠାକୁରଙ୍କୁ ଡାକୁଥାଏ ।

ହେ, ପ୍ରଭୁ ମୋତେ ଆଜି ଏଇ ବିପଦରୁ ରକ୍ଷା କର । ପ୍ରଭୁ ପ୍ରଭୁ ଡାକରେ ମୋ ପାଟି ଏକ ପ୍ରକାର ସ୍ଥିତ୍ ହୋଇ ଯାଇଥାଏ । ତା ସହିତ ବି ମୋ ଗୋଡ, ହାତ ମଧ୍ୟ ସ୍ଥିତ୍ ହୋଇଯାଇଥାଏ । ବତବତ ପାହୁଲ ପକେଇ ଚାଲୁଥାଏ । ଘଣ୍ଟାକୁ ଦେଢଶ ବେଗରେ ଚାଲୁଥିବା ମୋଟର ଇଞ୍ଜିନ୍ ପରି ମୋ ଦେହ ସେତେବେଳେ ଉତ୍ତେଜିତ ହୋଇ ରହିଥାଏ । ଗିୟର ସଟର୍ନ ଚେଞ୍ଜ ମାନେ ଇଞ୍ଜିନ୍ ସିଜ୍ । ମାନେ ହାର୍ଟ ଫେଲ୍ । ସଟାସ୍ ।

ହେ, ଭଗବାନ୍ । ମୋ ବୋଉର ଗୋଟିଏ ବୋଲି ପୁଅ । ଆଜି ଏଇଠି ମଲି । ଭୂତ ହାବୁଡରୁ ଖସିବା ଏତେ ସହଜ ନୁହେଁ । ମୋତି ବଡ଼ଉ କହୁଥିଲା ଏଇ ଓର୍ଡ଼ ନଇ ବନ୍ଧରେ ଅଛି ସେଇ ପଠାଣ ଭୂତ । ସେଇ ଯୋଉ ଏଲ୍ଆଇ ପଏଣ୍ଟ୍ ବସିଛି, ସେଠି ଅଛି ଗୋଟେ ମସ୍ତବଡ ବରଗଛ । ଆଉ ସେଇ ବରଗଛରେ ଅଛି ସେହି ପଠାଣ ଭୂତ । ରାତି ଦଅଶରୁ ଅଧିକା ହେଲେ ସେ ବାହାରେ । ସେଇ ପଠାଣ ଭୂତ ଯାହାକୁ ଲାଗିଛି, ତାକୁ ବୁଲେଇ ବୁଲେଇ ରକ୍ତ ଶୋଷି ତାକୁ କଣ୍ଟା କରି ଶେଷରେ ମାରିଛି ।

ପଠାଣ ଭୂତ ବିଭିନ୍ନ ସମୟରେ ବିଭିନ୍ନ ରୂପ ଧରି ବାହାରେ । ବେଳେବେଳେ ଏକ ସୁନ୍ଦରୀ ଯୁବତୀର ରୂପ ଧରି ବାହାରେ ତ କେବେ କୁକୁର ରୂପ ଧରେ । କେବେକେବେ ମଇଁଷି ରୂପ ଧରେ ତ କେବେକେବେ ମାରଣା ଶଣ୍ଢ ହୋଇ ବାହାରେ । ମୋତି ବଡ଼ଉ କହୁଥିଲା, ଥରେ ଏହି ପଠାଣ ଭୂତ ଏକ ମଇଁଷି ରୂପରେ ଗୋଟିଏ ଲୋକକୁ ମାରି ଦେଇଥିଲା । ଲୋକଟା କିଟିକିଟି ଅନ୍ଧାର ରାତିରେ ତା ଘରକୁ ଫେରୁଥିଲା । ହଠାତ୍ ସେ ଦେଖିଲା ନଇରେ ଏକ ମଇଁଷି ଭାସୁଛି । ସେ ଆଉ ସେଥିପ୍ରତି ଦୃଷ୍ଟି ଦେଲା ନାହିଁ । ମଇଁଷି ଆସ୍ତେଆସ୍ତେ ଉପରକୁ ଉଠି ଆସିଲା । ତଥାପି ଲୋକଟା ଏତେ ଗୁରୁତ୍ୱ ଦେଲାନି । ଏହାପରେ ମଇଁଷି ସୁ..ସୁ.. କରି ଲୋକଟା ଆଡକୁ ମାଡି ଆସିଲା । ତାପରେ ହଠାତ୍ ମଇଁଷିଟା ଉଭାନ୍ ହୋଇଗଲା । ହଠାତ୍ ଦେଖିଲାବେଳକୁ ଲୋକଟା ଆଗରେ ଏକ ବିରାଟକାୟ ଭୂତ ଠିଆ ହୋଇଛି । ତା ଦେହସାରା କଳାକଳା ଲୋମ । ଏଡ଼େଏଡ଼େ ଦାନ୍ତ ଓ ନଖ । ଭୟଙ୍କର ରାକ୍ଷାସ ଭଳି ଦେଖାଯାଉଛି ଭୂତ । ଲୋକଟା ସେଇଠି ହାଉଳି ଖାଇ ହାର୍ଟ ଫେଲ କରି ଯାଇଥିଲା । ଲୋକଟା ପାଟି ଶୁଣି ପାଖ ଗାଁର କେତେଜଣ ଲୋକ ଆସି ଦେଖିଲାବେଳକୁ ସେ ସେଠାରେ ମରିକି ପଡିଛି । ସେତେବେଳକୁ ମୋ ଛାତି ଖାଲି ବରଡା ପତ୍ର ପରି ଥରୁଥାଏ ।

ଆଉ ଗୋଟିଏ ଘଟଣା ମଧ୍ୟ ଘଟିଥିଲା ଏଇ ଓର୍ଡ଼ ବନ୍ଧରେ । ଏଇ ପଠାଣ ଭୂତ ଥରେ ଏକ



Digitized by srujanika@gmail.com

ସୁନ୍ଦରୀ ଯୁବତୀ ବେଶରେ ରାସ୍ତା କଡରେ ଠିଆ ହୋଇଥିଲା । ସେତେବେଳକୁ ରାତି ପ୍ରାୟ ଏଗାରଟା । ସେହି ସମୟରେ ଜଣେ ଲୋକ ସାଇକେଲରେ ବସି ଆସୁଥାଏ । ଯୁବତୀଟି ଲୋକଟିକୁ ଦେଖି କାନ୍ଦକାନ୍ଦ ହୋଇ ପଡିଲା । କହିଲା ମୋତେ ମୋର ସ୍ୱାମୀ ପିଟିପିଟି ରାତି ଅଧରେ ଆଣି ଏଠାରେ ଛାଡି ଦେଇଗଲା । ମୋ ସ୍ୱାମୀ ଜଣେ ରାକ୍ଷାସ । ସେ ସବୁବେଳେ ମୋତେ ମାଡ଼ ମାରେ ଓ ଘରୁ ବାହାର କରିଦେବାକୁ ଧମକ ଦିଏ । ଆଜି ହଠାତ୍ ମୋତେ ଆଣି ଏଠାରେ ଛାଡି ଦେଇ ଯାଇଛି । ଦୟାକରି ମୋତେ ଟିକେ ଆର ଗାଁରେ ଛାଡି ଦିଅ ବୋଲି ଯୁବତୀଟି ସେ ସାଇକେଲିଆକୁ କହିଲାରୁ ସାଇକେଲିଆ ତାକୁ ବସେଇକି ନେଲା । କିଛି ବାଟ ଯାଇଛି କି ନାହିଁ ସାଇକେଲ ଅସମ୍ଭବ ଭାବେ ଓଜନିଆ ହୋଇ ପଡିଲା । ସାଇକେଲ ଆଉ ଗଡିଲା ନାହିଁ । ଯେତେ ଜୋରରେ ଲୋକଟା ପେଡାଲ୍ ମାରିଲା ସାଇକେଲ ଆଉ ମୋଟେ ବି ଘୁଞ୍ଚିଲାନି । ତା ପରେ ଲୋକଟା ଓହ୍ଲେଇ ଦେଖିଲାବେଳକୁ ଅବସ୍ଥା ନାରଖାର । ଯୁବତୀଟି ହଠାତ୍ ଏକ ବିକଟାଳ ରୂପ ଧାରଣ କରିଛି । ତା ଆଖିରୁ ରକ୍ତ ଝରୁଛି । ଦେହରେ ବସ୍ତ୍ର ନାହିଁ । ଭୟଙ୍କର ଦେଖାଯାଉଛି । ଲମ୍ବାଲମ୍ବା କେଶ ତା ଦେହସାରା ବିଛେଇ ହୋଇ ପଡିଛି । ତା ପାଟିରୁ ଖାଲି ସଁ..ସଁ.. ଶବ୍ଦ ବାହାରୁଛି । ଲୋକଟା ଛାନିଆରେ ସେଇଠି ଟଳି ପଡି ମରି ଯାଇଥିଲା । ଏଇ ପଠାଣ ଭୂତକୁ ନେଇ ଅନେକ ଘଟଣା ମୁଁ ଶୁଣିଥିଲି । ଆଜି ସବୁ ମନ ପଡିଗଲାରୁ ମୋ ଦେହ ଖାଲି ଥରୁଥାଏ ।

ହେ, ଭଗବାନ୍ । ଆଜି ଏ ପଠାଣ ଭୂତ ମୋତେ ମୋଡି ଖାଇବ । ଏଇ ଗୋବରୀ ନଈରେ ମୋତେ ବୁଡ଼େଇ ବୁଡ଼େଇ ଅଣନିଶ୍ୱାସ କରି ମାରିବ ।

ମୋତି ବଡ଼ଉ କହୁଥିଲା ଭୂତମାନେ କାଳି ଜହ୍ନିଆ ରାତିରେ ବେଶି ବାହାରନ୍ତି । ଆଉ ସେମାନେ ବିଶେଷ କରି ନଈ ପୋଖରୀରେ ଲୋକଙ୍କୁ ବୁଡ଼େଇକି ମାରି ଦିଅନ୍ତି । ଇଲୋ ବୋଉ ମୁଁ ମରିଗଲେ ତୁ କେତେ ବାହୁନି ହୋଇ କାନ୍ଦିବୁ । ତୋର ମୁଁ ଗୋଟିଏ ବୋଲି ପୁଅ । ସେଇଥିପାଇଁ ତ ମୋତେ କିଏ ଟିକେ ଛୁଇଁ ଦେଲେ ତୁ ତାର ଅବସ୍ଥା ସାଂଘାତିକ୍ କରିଦେଉ । ଥରେ ମନ ପଡୁଛି ଯୁଝିଆ ସାହୁର ସାନ ପୁଅ ମୋ ହାତରୁ ଟିକେ ରକ୍ତ ବାହାର କରି ଦେଇଥିଲା ବୋଲି ତୁ ଯୁଝିଆ ଆଉ ତା ପରିବାରକୁ ଘାଇଲା କରି ଦେଇଥିଲୁ । ସେଦିନ ତୁ ଖାତା ଓପାସ ରହିଥିଲୁ । ବାପାଙ୍କ ସହ ଝଗଡା କରି ସମସ୍ତଙ୍କ ଖାଇବା ବନ୍ଦ କରି ଦେଇଥିଲୁ ।

କି ବେଳାରେ ଆଜି ହଷ୍ଟେଲରୁ ବାହାରିଲା କେଜାଣି ମଣିଷ । ସେଇ ଫିଜିକ୍ସ ଲେକ୍‌ଚରଟା ଯୋଗୁଁ ଆଜି ମୋର ଏ ଦଶା । ମୁଁ ଦିନ ଥାଉଥାଉ ଆସି ଘରେ ପହଞ୍ଚି ଯାଇଥାନ୍ତି । ଶଳା ଲେକ୍‌ଚରଟା ପଢେଇଲା ପଢେଇଲା ଯେ ଦୁଇ ଘଣ୍ଟା ଡେରି କରିଦେଲା । ବଦମାସ୍ ଲେକ୍‌ଚରଟା ମହା ନୁଙ୍ଗୁରା । କ୍ଲାସରେ ଶେଫାଳୀ ବୋଲି ଗୋଟିଏ ବଙ୍ଗାଳି ଝିଅ ପଢୁଛି । ତାକୁ ଲାଇନ୍ ମାରୁଛି ସେଇ ଲେକ୍‌ଚରଟା । ସେ ତ କ୍ଲାସ୍‌ରେ ଥିଲେ ଶଳାଟା କେତେ ପଢେଇବ କ'ଣ ପଢେଇବ ପୂରା



Digitized by srujanika@gmail.com

ବେଲାଇନ୍ ହୋଇଯିବ । ତା ସାଙ୍ଗରେ ହେଁହେଁ ଫେଁଫେଁ । ସେ ବଦମାସୀ ଟୋକିଟା ବି କମ୍ ଜନ୍ତୁ ନୁହେଁ । ପାଠ ଆଦାୟ କରିବା ପାଇଁ ଲେକ୍‌ଚରଟାକୁ ତା ଅଣ୍ଟାରେ ଝୁଲେଇ ରଖିଥିବ । ତେଣେ ସେଇ ଡେଙ୍ଗା ଜିନ୍‌ସ ପିନ୍ଧା ସୁମନ୍ତ ମାଝୀ ସହ ଫିଲ୍ମ ଯାଉଥିବ । ଆଉ କେତେବେଳେ ପାନଖିଆ ସେଇ ଭେରାଇଟ୍ ଷ୍ଟୋର୍ ଟୋକାଟା ସହ ଆଖି ନଚେଇ ନଚେଇ କଥା ହଉଥିବ ।  ଯାହାବି ହଉ ସେହି ନୁଙ୍ଗୁରା ଲେକ୍‌ଚର ଆଉ ବଦମାସୀ ଶେଫାଳୀ ଟୋକିଟା ପାଇଁ ମୁଁ ଆଜି ଆମ ଗାଁକୁ ଆସୁଥିବା ପ୍ରଥମ ବସ୍ ମିସ୍ କଲି । ଦ୍ୱିତୀୟ ବସ୍ ଆସୁଆସୁ ରାତି ନଅ । ପୁଣି ରାସ୍ତାର ଅବସ୍ଥା ନ କହିବା ଭଲ । ତା' ଛଡା ଆମ ଗାଁକୁ ଆସୁଥିବା ସେଇ ଛାଉ ରଙ୍ଗର ଦଦରା ବସ୍‌ଟିର ଅବସ୍ଥା ବି ତଦ୍ରୂପ । ଆଶ୍ଚର୍ଯ୍ୟଜନକ ଭାବେ ଗର୍ଭବତୀ ହୋଇ ପଡିଥିବା ଏକ ସତୁରୀ ବର୍ଷୀୟା ବୃଦ୍ଧା ଭଳି ବସ୍‌ଟିର ଅବସ୍ଥା । ଡାଇବେଟିସ୍ ରୋଗୀଙ୍କ ଭଳି ସବୁବେଳେ କୁଛୋଉଥିବ । ପେଲୁପେଲୁ ଯେତେ ବାଟ ।

ଶଳା ଆଜି ପୂରା ରାତି ଏଗାର କରିଦେଲା ଓର୍ଓ୍ଵ ଘାଟରେ ପହଞ୍ଚିବାକୁ । ପୁଣି ନଇ ପାରି । ନଇ ଆର ପାରିରେ ଘାଟିଆ ଶୋଇ ପଡିଲାଣି । ତାକୁ ବହୁ କଷ୍ଟରେ ଡାକି ଉଠାଇଲି । କୋଡିଏ ଟଙ୍କା ଦେବି ବୋଲି କହିବାରୁ ଘାଟିଆ ପାରି କରିବାକୁ ରାଜି ହେଲା । ନଇ ସେପାରି ଆମ ଗାଁ ଆଡକୁ ଯିବାକୁ କେହି ଲୋକ ନ ଥାନ୍ତି । ପୁଣି ମୁଁ ଯିବି ଅରଡପଲ୍ଲୀ । ମାନେ ଓର୍ଓ୍ଵ ଘାଟ ପାରି ହୋଇ ସାରିବା ପରେ ଚାଲିଚାଲି ଏଗାର କିଲୋମିଟର ଯିବାକୁ ପଡିବ । ବାଟରେ ମରାଖାଇ । ଦିନରେ ଆସିଥିଲେ କେଜାଣି କାହା ସହ ଦେଖା ହୋଇଥାନ୍ତା । ତା ସାଙ୍ଗରେ ସାଇକେଲରେ କିମ୍ବା ମୋଟର ସାଇକେଲରେ ଯାଇ ହେଇଥାନ୍ତା । ଆମ ଗାଁ ବାଟ ଦେଇ କେବଳ ଗୋଟିଏ ମାତ୍ର ଟ୍ରେକର ବହୁ କଷ୍ଟରେ ଯିବାଆସିବା କରୁଥାଏ । କିନ୍ତୁ ଏବେ ରାତି ବାଆର୍ । ଏତେ ରାତିରେ ଏ ମଫସଲି ଗାଁରେ ଆଉ ଟ୍ରେକର ନା ଫ୍ରେକର୍ । ଇଏ କ'ଣ କଟକ ଫଟକ ହୋଇଛି ଅଟୋ କିମ୍ବା ରିକ୍ସା ରିଜର୍ଭ କରି ଚାଲିଯିବି । ବଡ ମୁସ୍କିଲିରେ ପଡିଲି ଆଜି ।

ମୋତି ବଡ଼ଉ କହୁଥିଲା ହାରାମୀ ଭୂତମାନଙ୍କଠାରୁ ଶୈତାନ୍‌ମାନେ କିନ୍ତୁ ବେଶି ଖତରନାକ୍ । ସେ ଶଳାଗୁଡା ଏମିତି ଭାବେ ମଣିଷ ଦେହରେ ଲାଗି ରହିଯିବେ ଯେ ବାହାରକୁ କିଛି ହେଲେ ଜଣା ପଡିବେନି । କିନ୍ତୁ ରକ୍ତ ଶୋଷିଶୋଷି କଣ୍ଟା କରି ଦେଇଥିବେ ।

ମୋର ମନ ଅଛି ବାଆଜି ଝିଅ ନଖିକି ଏକ ପିଶାଚୁଣୀ ଲାଗିଥିଲା । ମାସେ କାଳ ତା ଦେହରେ ରହିଲା । ତାକୁ ପୂରା କଣ୍ଟା କରିଦେଲା । ନଖିଟା ଖୁଉବ୍ ସୁନ୍ଦରୀ ଆଉ ଗୋରୀ ଝିଅ ଥିଲା । କିନ୍ତୁ ସେ ପିଶାଚୁଣୀଟା ତାକୁ ଖରାପ କରିଦେଲା । ବାଆଜି ଦାଦା କେତେ ଗୁଣିଟୁଣି ଦେଖେଇଲା । କିଛି ଫଳ ହେଲାନି । ମୂଳବସନ୍ତରେ ଜଣେ ନାଁ କରା ଗୁଣି ଥିଲା । ତା ପାଖକୁ ବାଆଜି ଦାଦା ଯାଇଥିଲା । ସେହି ଅଞ୍ଚଳରେ ସେ ଗୁଣିଆର ବହୁତ ଧାକ୍ । ସେ ଭୂତ ହେଉ କି ପିଶାଚୁଣୀ. ତାକୁ ଏମିତି ଭାବେ ବନ୍ଦୀ କରିଦେବ ଯେ ସେ ଟିକେ ହେଲେ ବି ହଲ୍‌ଚଲ୍ ହୋଇ ପାରିବ



Digitized by srujanika@gmail.com

ନାହିଁ ।

ଆମ ଗାଁ ପାଖ ଅଳେଇଲ ଗାଁରେ ଗୋଟା ଝିଅକୁ ପିଶାଚୁଣୀ ଲାଗିଥିଲା । ସେ ଝିଅ ମରିବା ମରିବା ହୋଇ ଯାଇଥିଲା । ସବୁଆଡୁ ଡାକ୍ତର ବଇଦ ଦେଖାଇ ଶେଷରେ ବାପା ମା ଝିଅ ଆଶା ଛାଡି ଦେଇଥିଲେ । କିନ୍ତୁ କିଏ ଗୋଟା ତାଙ୍କୁ ଏହି ଗୁଣିଆ କଥା କହିଲା । ସେହି ଗୁଣିଆକୁ ଅଣାଯାଇଥିଲା । ଗୁଣିଆ ସପ୍ତାହ କାଳ ସେ ଝିଅକୁ ଝୁଣା, ଲଙ୍କା ଆଉ ବିଭିନ୍ନ ପ୍ରକାର ଧୂଆଁ ଦେଇ ଝଡାଫୁଙ୍କା କଲା । କୁଆଡେ ସେ ଝିଅକୁ ଗୋଟା ଭୟଙ୍କର ପିଶାଚୁଣୀ ଲାଗିଥିଲା । ସେ ପିଶାଚୁଣୀ କଟରାମଲ ଗାଁର ମହାପାତ୍ର ଘରର ବଡ ବୋହୂ ଥିଲା ବୋଲି ଗୁଣିଆ କହିଥିଲା ।

ସେ ଗୁଣିଆ ଭୂତ ପ୍ରେତ ସହ କଥା ହୋଇପାରେ । ସେହି ପିଶାଚୁଣୀ ସହ କଥା ହୋଇ ଗୁଣିଆ ଜାଣିବାକୁ ପାଇଲା, ସେହି ସ୍ତ୍ରୀ ଲୋକଟି ଯେତେବେଳେ ଦଶ ମାସର ଗର୍ଭବତୀ ଥିଲା ସ୍ୱାମୀ, ଶାଶୂ, ଶ୍ୱଶୁର ମିଶି କିରାସିନି ଢାଳି ତାକୁ ଜୀଅନ୍ତା ପୋଡି ମାରି ଦେଇଥିଲେ । ଫଳରେ ସେ ପିଶାଚୁଣୀ ହୋଇ ଯାଇଥିଲା ।

ମୋତି ବଡ଼ଉ କହୁଥିଲା ଯେଉଁ ସ୍ତ୍ରୀ ଲୋକ ପେଟରେ ପିଲାପିଲି ଥିଲାବେଳେ ମରିଯାଏ ସେ ପିଶାଚୁଣୀ ହୋଇଥାଏ ।

ସେ ଗୁଣିଆ ଆଉ ଗୋଟା ବଡ କାମ କରିଥିଲା । ସେଇ ପିଶାଚୁଣୀକୁ କୁଆଡେ ନେଇ କଲିକତା କି ବମ୍ବେ ଆଡେ ଛାଡି ଦେଇ ଆସିଥିଲା । ସେଠାରେ ଏକ କଣ୍ଟା ଗଛରେ ବନ୍ଦୀ କରି ଦେଇଥିଲା । ଯା ହେଉ ଅଳେଇଲ ଗାଁର ସେଇ ଝିଅ ମରିବା ମୁହଁରୁ ବଞ୍ଚି ଯାଇଥିଲା । ଝିଅର ବାପା ସେ ଗୁଣିଆକୁ ପାଞ୍ଚ ଶହ ଟଙ୍କା, ଖଦୀ ଯୋଡ, ବସ୍ତାଏ ଆଳୁ, ବସାଦହି, ତିନି କୋଡି ଛେନା ଦେଇ ତାର ମନ ସନ୍ତୁଷ୍ଟ କରି ତା ଗାଁକୁ ପଠେଇଥିଲା । ସେଇ ଦିନୁ ଆମ ଅଞ୍ଚଳରେ ସେ ଗୁଣିଆର ନାଁ ବେଶ୍ ପ୍ରଚାର ହୋଇ ଯାଇଛି । ତେବେ ସେଇ ଗୁଣିଆକୁ ମଧ୍ୟ ଆମ ଗାଁକୁ ଅଣା ଯାଇଥିଲା । ହେଲେ ନଖି ସେଇ ପିଶାଚୁଣୀ କବଳରୁ ବଞ୍ଚି ପାରି ନଥିଲା । ଗୁଣିଆ କହିବା ଅନୁଯାୟୀ ଏଇ ପିଶାଚୁଣୀ ହେଉଛି ଗୋଟା ବ୍ରାହ୍ମଣ ଘରର ଝିଅ । ବିବାହର ଦୁଇ ବର୍ଷ ପରେ ସେ ନଅ ମାସର ଗର୍ଭବତୀ ହୋଇଥିଲା । ତାକୁ ତା ସ୍ୱାମୀ, ଶାଶୂ, ଶ୍ୱଶୁର ମିଶି ତଣ୍ଟିରେ ଶାବଳ ପକାଇ ମାରି ଦେଇଥିଲେ । ଏକଥା ଗୁଣିଆ ଏକାନ୍ତରେ ସେ ପିଶାଚୁଣୀ ସହ କଥା ହୋଇ ଜାଣି ପାରିଥିଲା ।

ଆମ ଗାଁର ଶମ୍ଭୁ ରାଉତର ସାନ ଝିଅ ମୀନା ବାହା ହୋଇଥିଲା ପାଖ ଗାଁରେ । ଝିଅ ରାଜିକି ପୁଅ ରାଜି । ପୁଅ କାର୍‌ରେ ରାତି ଅଧରେ ମୀନାକୁ ତା ଘରୁ ଉଠାଇ ନେଇ ଯାଇଥିଲା । ତିନି ବର୍ଷ କାଳ ମୀନା ବାପ ଘରକୁ ଆସି ନଥିଲା । ତାର ପେଟରେ ସାତ ମାସର ପିଲା ଥିଲା । ସେ ବାପ ଘରକୁ ବୁଲି ଆସିଥିଲା । କିନ୍ତୁ ନୃଶଂସ ବାପ ଘର ଲୋକେ ମିଶି ମୀନାକୁ ମାରି ଦେଇଥିଲେ । ମୀନା ମରିବା ଘଟଣା ଗୋଟିଏ ଅଧ୍ୟାୟ । କହିଲେ ସରିବନି । ମୀନା ମରିଯିବାର ଯା ଭିତରେ



Digitized by srujanika@gmail.com

ପାଞ୍ଚ ବର୍ଷ ବିତିଗଲାଣି । ତେବେ ମୋତି ବଡଉ କହୁଥିଲା ମୀନା କୁଆଡେ ଚିରୁଗୁଣୀ ହୋଇଛି । ଚିରୁଗୁଣୀଗୁଡା ମହା ଡେଞ୍ଜର । ପିଶାଚୁଣୀଙ୍କ ବୋପାର ବୋପା । ଆମ ବାଡି କଇଁଥ ଗଛରେ ସେ ରହୁଛି । ମୋତି ବଡ଼ଉ କହୁଥିଲା କୁଆଡେ ମୀନା ରାତି ଅଧରେ ତା ପୁଅକୁ ନିଆଁ ଜାଳି ଶେକି ଦେଉଛି । ସେ ନିଜେ ଆଖିରେ ଦେଖିଛି ।

ଥରେ ରାତି ପାହାନ୍ତା ପହର ବେଳକୁ ମୋତି ବଡ଼ଉକୁ ଭାରି ହଗ ମାଡିଲା । ସେ ଉପାୟ ନ ପାଇ ବାଡି କଇଁଥ ଗଛ ମୂଳକୁ ଚାଲିଗଲା । ହଗି ବସିଛି । ହଠାତ୍ ଦେଖିଲା ମୀନା କଇଁଥ ଗଛ ମୂଳେ ବସି ତା ପୁଅକୁ ଶେକି ଦଉଛି । ଇଲୋ ବୋପାଲୋ କହି ମୋତି ବଡ଼ଉ ଦି ଖେପାକରେ ଆସି ଆମ ଦୁଆରେ । ମାସେ କାଳ ମୋତି ବଡ଼ଉକୁ ଜ୍ୱର ହୋଇଥିଲା । ସେହିଦିନଠାରୁ ମୀନା ଭୟରେ ସଞ୍ଜ ବୁଡିଗଲା ପରେ କେହି ବି ବାଡିକି ଯାଆନ୍ତି ନାହିଁ ।

କାଳି ଜହ୍ନିଆ ରାତିରେ ଭୂତମାନେ କୁଆଡେ ବାଗୁଡି ଖେଳନ୍ତି । ମୋତି ବଡ଼ଉ ଯେତେବେଳେ ପିଲା ହୋଇଥିଲା ତା ଜେଜେମା ଏକଥା ତାକୁ କହୁଥିଲା । ମୋତି ବଡ଼ଉର ଜେଜେ ସେତେବେଳେ ସେ ଅଞ୍ଚଳର ବେଶ୍ ବଳୁଆ ଲୋକ ଥିଲେ । ସେ କୁଆଡେ କାଙ୍କୁଲାଏ ଭାତ ଆଉ ପାଞ୍ଚ ବେଲା ଡାଲ୍ମା ଖାଆନ୍ତି । ସକାଳେ ଗୋଟା ବଡ଼ ବାଲ୍ତିରେ ଚୁଡା ଧୁଆଯାଏ । ଛ ହାତି ମର୍ଦ୍ଦ । ଗାଁର ଲୋକେ ତାଙ୍କୁ ଡରନ୍ତି ଆଉ ମାନନ୍ତି । ଥରେ ବୁଢା ମଝିଆ ପୁଅର ଶ୍ୱଶୁର ଘରକୁ ଯାଇ ରାତି ଅଧରେ ଫେରୁଥିଲା । ସମୁଦି ଆଉ ଘରର ଲୋକମାନେ ବୁଢାକୁ ଯେତେ ଅଟକାଇଲେ ବୁଢା କାହାରି କଥା ରଖିଲାନି । ବାଟରେ ମରାଖାଇ ଅଛି, ଏତେ ରାତିରେ ଫେରିବାଟା ଠିକ୍ ହେବନି ବୋଲି ସମୁଦି, ସମୁଦୁଣୀ ଯେତେ ବୁଝାଇଲେ ବି ବୁଢା ସେସବୁକୁ କର୍ଣ୍ଣପାତ କଲାନାହିଁ । ବୁଢା ଭାରି ଜିଦିଆ । ଯାହା ବୁଝିଥିବ ସେୟା । ବୁଢା ଶେଷରେ ସେମାନଙ୍କୁ ବେଖାତିର୍ କରି ଚାଲି ଆସିଲା । ବୁଢା ସିନା ଚାଲି ଆସିଲା, କୋଶେ ବାଟ ଯାଇଛି କି ନାହିଁ ବାଟରେ ପଡିଲା ମରାଖାଇ । ବୁଢାର ସେ ଆଡକୁ ଧ୍ୟାନ ନ ଥାଏ । ବୁଢା ଧପାଲିଥାଏ । କାଳି ଜହ୍ନିଆ ରାତି । ବୁଢା ଦେଖିଲା ନିକଟରେ ଏକ ବିସ୍ତୀର୍ଣ୍ଣ ପଡିଆରେ ଦଶ/ପନ୍ଦର ଜଣ ଲୋକ ଉଲଗ୍ନ ହୋଇ ବାଗୁଡି ଖେଳୁଛନ୍ତି । ସେତେବେଳକୁ ରାତି ବାରଟା ପରେ ହୋଇଯିବଣି । ବୁଢା ଓପରକୁ ସିନା ମୁହଁ ଟାଣ ଦେଖାଉଥାଏ କିନ୍ତୁ ଭିତରେ ଗାଣ୍ଡି ସତରପନ୍ଦର । ଛାନିଆରେ ଦେହରୁ ମୁଣ୍ଡରୁ ଝାଳ ବାହାରି ସାରିଲାଣି । ବୁଢା ନିଶ୍ଚିତ ହେଲା ଯେ ଏମାନେ ଭୂତ । ହଠାତ୍ ବୁଢା ମୁଣ୍ଡକୁ ଏକ ବୁଦ୍ଧି ଢୁକିଲା । ସବୁ ଭୂତମାନେ ଲଙ୍ଗଳା ହୋଇ ମୁଣ୍ଡରେ ଠେକା ବାନ୍ଧି ବାଗୁଡି ଖେଳୁଛନ୍ତି । ଅନ୍ଧାରରେ ଭୂତମାନେ କେବଳ କଳାକଳା ଦେଖା ଯାଉଥାନ୍ତି । ସେଇଠୁ ବୁଢା ନିଜେ ନିଜର ଲୁଗା ଖୋଲିଲା । ପିନ୍ଧା ଲୁଗାକୁ ନିଜ ମୁଣ୍ଡରେ ଠେକା ବାନ୍ଧିଲା । ଆସ୍ତେ ଆସ୍ତେ ଯାଇ ଭୂତ ଦଳଙ୍କ ସହ ମିଶିଗଲା । ତାଙ୍କ ପାଙ୍ଗରେ ବାଗୁଡି ବାଗୁଡି ରା ଧରି ଖେଳରେ ମାତିଗଲା । ସେ ଶଳା ଭୂତଗୁଡା ବୁଢାର କିଛି ହେଲେ ଟେର୍ ପାଇଲେନି । ବୁଢାର



Digitized by srujanika@gmail.com

ଗନ୍ଧ ବାସନା କିଛି ବି ଜାଣି ପାରିଲେ ନାହିଁ ଓଲା ଭୂତଗୁଡା । ବୁଢା ତାଙ୍କ ସାଙ୍ଗରେ ବାଗୁଡି ଖେଳିଲା । ବହୁ ସମୟ ଧରି ଖେଳିଲା । ଭୋର୍ ହୋଇ ଆସୁଥାଏ । ଭୂତମାନେ ଧୀରେଧୀରେ ନଈ ଆଡକୁ ଚାଲିଗଲେ । ଏହି ସମୟରେ ବୁଢା ଏକା ଡିଆଁ ମାରିଛି ଆସି ତାଙ୍କ ଘର ଅଗଣାରେ । ଅଗଣାରେ ବୁଢା ଆସି କଚାଡି ହୋଇ ପଡିଲା ଅଝାଲ ହୋଇ ।  ଘର ଲୋକମାନେ ବୁଢାର ଏପରି ଅବସ୍ଥା ଦେଖି ଛାନିଆ । ବୁଢାକୁ ଶେକାଶେକି କରି ଫୁଙ୍କାଫୁଙ୍କି କଲେ । ଗରମ ଖୀର ପିଆଇଲେ । ସଙ୍ଗେସଙ୍ଗେ ଅରୁଆ କଦଳୀବଣରୁ ଗୁଣୀ ଡକା ହୋଇ ଆସିଲା । ଗୁଣୀ ଝଡା ଫୁଙ୍କା କଲା । ବୁଢା ଟିକେ ହଲ୍‌ଚଲ ହେଲା ଓ ଉଠି ବସିଲା । ଗଲା ରାତିର ସବୁ ଘଟଣା କହିଲା । କିନ୍ତୁ ବୁଢା ଏହି ଘଟଣାର କିଛି ଦିନ ପରେ ମରିଯାଇଥିଲା । ମୋର ସେକଥା ମନ ପଡିଯିବାରୁ ରୁମ ମୂଳ ଟାଙ୍କୁରି ଉଠୁଥିଲା । ତଥାପି ବାଟ ସରିନି । ଆହୁରି ତିନିଟା ଗାଁ ପାର ହେଲାପରେ ଯାଇ ଆମ ଗାଁ ଆସିବ ।

ମୋ ବୋଉ ବି ତା ବାପ ଘରର ଗୋଟେ ଘଟଣା ମୋତେ କେତେବାର ଶୁଆଇ ଦେଲା ବେଳେ କହିଛି । ମୋର ପାଞ୍ଚ ମାମୁ । ପାଞ୍ଚ ଭାଇରେ ମୋ ବୋଉ ଗୋଟିଏ ବୋଲି ଭଉଣୀ । ଅତି ଅଲିଅଳି । ମାମୁ ଘର ବଡ ଚାଷୀ । ପଚାଶ ଏକର ସମ୍ପତ୍ତି । ଧାନ, ଆଖୁ, ମକା, ମାଣ୍ଡିଆ ଆଦି ଚାଷ ହୋଇଥାଏ । ମୋ ବୋଉକୁ ସେତେବେଳେ ବାର ବର୍ଷ । ମାମୁ ଘର ଗାଁ ଦେଇ ଗୋବରୀ ନଈ ଯାଇଛି । ସେଦିନ ରାତି ପାହାନ୍ତା ପହରରେ ନଈରେ ଜୁଆର ହେବାର ଥିଲା । ତେଣୁ ମାମୁମାନେ ପୂର୍ବ ଦିନ ସନ୍ଧ୍ୟାରେ କଥାବାର୍ତ୍ତା ହୋଇଥାନ୍ତି, ଯିଏ ଆଗ ଉଠିବ ସିଏ ଅନ୍ୟମାନଙ୍କୁ ଡାକିଦେବ । ଏକଥା କିନ୍ତୁ ଭୂତ ଶୁଣି ଦେଇଥିଲା । ରାତି ତିନିଟା ବାଜିନି ଭୂତ ଆସି ଜଣଜଣ କରି ସବୁ ମାମୁଙ୍କୁ ଉଠାଇ ନେଇଗଲା । ନଈ କୂଳରେ ମାମୁମାନେ ବସିଛନ୍ତି । ଜୁଆର କେତେ ଉପରକୁ ଉଠିଲାଣି କହି ଭୂତ ଜଣେ ମାମୁଙ୍କୁ ଡାକି ନେଇ ନଈ କୂଳକୁ ଚାଲିଗଲା । ଏଣେ ଅନ୍ୟ ମାମୁମାନେ ବସିଥାନ୍ତି । କିନ୍ତୁ ପାଣି ଦେଖିବାକୁ ଯାଇ ମାମୁ ଆଉ ଫେରିଲାନି । ଅଧ ଘଣ୍ଟା ଗଲା । ଘଣ୍ଟାଏ ଗଲା । ସେ ମାମୁ ନ ଆସିବାରୁ ଅନ୍ୟ ଜଣେ ମାମୁ ପାଣି ଦେଖିବାକୁ ଯାଇ ସେ ବି ସେହିଭଳି ଡେରି କଲା । ଏମିତି ଏମିତି ସବୁ ମାମୁମାନଙ୍କୁ ଭୂତ ଅଲଗା ଅଲଗା ସ୍ଥାନକୁ ଡାକି ନେଇ ମାରିବାର ଯୋଜନା କରିଥିଲା । କିନ୍ତୁ ଠାକୁର ତ ଅଛନ୍ତି । ଠିକ୍ ଏହି ସମୟରେ ଘରେ ଦେଖିଲା ବେଳକୁ କେହି ହେଲେ ମାମୁ ନାହାନ୍ତି । ଏତେ ରାତିରେ ଏମାନେ କୁଆଡେ ଗଲେ ବୋଲି ଘରେ ସନ୍ଦେହ କଲେ । ଜୁଆର ତ ଭୋଅରୁ ହେବ । ରାତିରୁ ଏମାନେ କ'ଣ କରିବେ? ସନ୍ଦେହ ହେଲାରୁ ସେମାନେ ଗାଁର ଅନ୍ୟ ଲୋକମାନଙ୍କୁ ଏକଥା ଜଣାଇ ନଈ କୂଳ ବିଲ ଆଡକୁ ଗଲେ । କାଳେ ଭୂତ ଡାକି ନେଇ ଯାଇଥିବ? ଗାଁ ଲୋକ ବିଲ ପାଖକୁ ଯାଇ ଦେଖିଲା ବେଳକୁ ପାଞ୍ଚ ମାମୁମାନେ ଏଣେତେଣେ ବସିଛନ୍ତି । ଗୋଟିଏ ମାମୁକୁ ଭୂତ ନଈ ଆଡକୁ ଡାକି ନେଇ ପାଣିରେ ମାଡିବାର ଯୋଜନା କରିଥିଲା । କିନ୍ତୁ ଠିକ୍ ସମୟରେ ଗାଁ ଲୋକ ପହଞ୍ଚି ଯାଇ ସବୁ ମାମୁମାନଙ୍କୁ ଭୂତ କବଳରୁ ଉଦ୍ଧାର କରିଥିଲେ ।



Digitized by srujanika@gmail.com

ସେଇଦିନୁ ଜାଣିଥିଲି ଯେ ତମେ ରାତିରେ କ'ଣ ଗୋଟା କରିବା ନେଇ ଯାହା ଚିନ୍ତା କରି ଶୋଇବ ଯଦି ଭୂତ ତାହା ଶୁଣିଦେଲା କଥା ସରିଲା । ରାତି ଅଧରେ ସେଇ ଭୂତ ଆସି ଡାକି ନେଇ ନଈରେ ମାଡିଦେବ । ତେଣୁ ମୁଁ ପାହାନ୍ତାରେ ଫୁଲ ତୋଳିବାକୁ କେବେହେଲେ ସନ୍ଧ୍ୟାରେ ଚିନ୍ତା କରି ନଥାଏ । ଥରେ ମୋ ସାଙ୍ଗ ମୁନା କହିଲା: ଅପୂର୍ବା ବାରିରେ ଭଲ ଫୁଲ ହୋଇଛି । ଆମେ ରାତି ଅଧରେ ଯାଇ ତୋଳି ଆଣିବା । କିନ୍ତୁ ଚଅଟ୍ କିନା ମୁଁ ସେ ଯୋଜନାକୁ ବାତିଲ କରିଦେଲି । ମୁଁ ମୁନାକୁ କହିଥିଲି ଆଉ କେବେ ଏଭଳି ଯୋଜନା କରିବୁନି । ଭୂତ ଏ କଥା ଜାଣି ପାରିଲେ ମୋ ରୂପ ଧରି ତତେ କିମ୍ବା ତୋ ରୂପ ଧରି ମୋତେ ଡାକି ନେଇ ନଈରେ ମାଡିଦବ ।

ମୋର ବି ମନ ପଡିଗଲା ପରଭା ବେହେରା ପୁଅ ହରିଆ ମରିବା କଥା । ବାଇଶି ବର୍ଷର ଗଢା ଟୋକାଟା ବିଷ ପିଇ ମରିଗଲା । ବିଲକୁ କାମ କରିବାକୁ ଯାଇ ନଥିଲା ବୋଲି ତା ବାପା ବିଗିଡିଥିଲା । ସେଇ ରାଗରେ ହରିଆ ବିଷ ପିଇ ଦେଇଥିଲା । ହରିଆ ମଲା ଦେହକୁ ମୁଁ ନିଜେ ମୋ ଆଖିରେ ଦେଖିଛି । ସେ କୁଆଡେ ଭୂତ ହୋଇଛି ବୋଲି ଲୋକ କହୁଛନ୍ତି । ହେଲେ ଆମ ଗାଁର ସେ କିଛି କ୍ଷତି କରିନି । ପାଖ ଗାଁରେ ଜଣକୁ ଗ୍ରାସିଥିଲା । ସେ ସଅଳ ସଅଳ ଛାଡିଗଲା । ଯା କୁହ ପଛେ ହରିଆଟା ଭଲ ପିଲା ଥିଲା । ମୋ ସାଙ୍ଗରେ ପଞ୍ଚମ ପର୍ଯ୍ୟନ୍ତ ପଢିଥିଲା । କାମଧନ୍ଦା କରିକରି ସେ ପାଠ ଛାଡି ଦେଇଥିଲା । ମୋ ଦେହ ଶୀତେଇ ଉଠିଲା ହରିଆ କଥା ମନ ପଡିବାରୁ । ହରିଆର ବହୁତ ପଢିବାକୁ ଇଛା ଥିଲା । କିନ୍ତୁ ତା ବାପା ତାକୁ ପଢେଇ ଦେଇ ନଥିଲା । ବିଲ କାମଠାରୁ ଆରମ୍ଭ କରି ଧାନ ଭାଙ୍ଗିବା, ଗାଈ ଚରେଇବା, ମାଟି କାମ କରିବା ପର୍ଯ୍ୟନ୍ତ ସବୁ କାମ କରୁଥିଲା । ତାଙ୍କ ସାହିର ପିଦେଇକୁ ସେ ପ୍ରେମ କରୁଥିଲା । କିନ୍ତୁ ହରିଆ ମରିବାର ଅସଲ କାରଣ ହେଉଛି ଅଲଗା । ସେଦିନ ରଜ ହୋଇଥିବାରୁ ସେ ପିଦେଇ ଆଉ କିଛି ଝିଅଙ୍କୁ କେନ୍ଦ୍ରାପଡା ଭାସ୍କର ସିନେମା ହଲ୍‌କୁ ଫିଲ୍ମ ଦେଖେଇ ନେଇଥିଲା । ତା ବାପା ପରଭା ଏଥିନେଇ ବହୁତ ଗାଳି ଗୁଲଜ କରିଥିଲା । ବାପାର ଟାଣ କଥା ସହି ନ ପାରି ସେ ବିଷ ପିଇ ଦେଇଥିଲା ।

ଭୟରେ ମୋ ଦେହ ଖାଲି ବରଡା ପତ୍ର ପରି ଥରୁଥାଏ । ଏହା ଭିତରେ ମୁଁ ଓର୍ଡ଼ ଘାଟ ପାର ହୋଇ ପେର୍ଢ଼ୁପୁରରେ ପହଞ୍ଚି ଯାଇଥାଏ । ପେର୍ଢ଼ୁପୁର ଗାଁ ଶେଷ ମୁଣ୍ଡରେ ଗୋଟେ ବିରାଟ ଚାକୁଣ୍ଡା ଗଛ ଅଛି । ସେଥିରେ କୁଆଡେ ଶହଶହ ସଂଖ୍ୟାରେ ଡାଆଣୀ ରହନ୍ତି ବୋଲି ମୋତି ବଡ଼ଉ କହୁଥିଲା । ଏହି ଚାକୁଣ୍ଡା ଗଛକୁ କେତେ ଶହ ବର୍ଷ ବିତି ଗଲାଣି ତାହା ଗାଁ ଲୋକେ କହି ପାରନ୍ତି ନାହିଁ । ଇଂରେଜମାନେ ଏଠାକୁ ଆସିବା ପୂର୍ବରୁ ମୋଗଲ ଶାସନ ସମୟରୁ ହିଁ ଏହି ଚାକୁଣ୍ଡା ଗଛ ଏଠାରେ ଥିଲା । ପୁରୁଷ ପୁରୁଷ ଧରି ଏହି ଚାକୁଣ୍ଡା ଗଛ ଏଠାରେ ରହି ଆସିଛି । ଏହି ଗଛ ଆମ ଅଞ୍ଚଳର ମାନେ ପନ୍ଦର ମୌଜାର ସବୁଠୁ ପୁରୁଣା ଗଛ । କେତେ ଥର ଏହି ଗଛ କଟା ହବହବ ବୋଲି ଯୋଜନା ହୋଇଛି । ଆର୍‌ଆଇ ଅମିନ ଆସି ମପାମପି କରି ଯାଇଛନ୍ତି । କିନ୍ତୁ ସେ ଗଛ



Digitized by srujanika@gmail.com

କଟା ହୋଇ ପାରିନି । ଏହି ଗଛରେ ବହୁ ସଂଖ୍ୟାରେ ଡାଆଣୀ, ପିଶାଚୁଣୀ ବାସ କରନ୍ତି । ଥରେ ଆମ ଗାଁର ଝୁନି ବୋଉକୁ ଏକ ଡାଆଣୀ ଲାଗିଥିଲା । ଗୁଣିଆ ଆସି ଝଡାଫୁଙ୍କା କଲା । ତାକୁ ପଚାରିଲା ତୁ କେଉଁଠି ରହୁଛୁ? ସେ ସେହି ଚାକୁଣ୍ଡା ଗଛରେ ରହୁଛି ବୋଲି କହିଥିଲା । ସେ ଚାକୁଣ୍ଡା ଗଛରେ ତେର ଶ' ଡାଆଣୀ ରହୁଛନ୍ତି ବୋଲି ସେ ମଧ୍ୟ କହିଥିଲା । ସେଠାରେ ରହୁଥିବା ଡାଆଣୀମାନଙ୍କୁ ନେଇ ଏକ ଡାଆଣୀ ଉନ୍ନୟନ ସମିତି ଗଠନ କରାଯାଇଛି ବୋଲି ସେ ଡାଆଣୀ କହିଥିଲା । କେଉଁ ଡାଆଣୀ ଉପରେ ବିପଦ ପଡିଲେ ସେହି ଗଛର ଅନ୍ୟ ସବୁ ଡାଆଣୀମାନେ ଏକଜୁଟ ହୋଇ ତାକୁ ସାହାଯ୍ୟ କରନ୍ତି ।

ଭୂତ ବେଳେବେଳେ ତାଳ ଗଛ ହୋଇ ଚାଲେ । ରାତି ସେତେବେଳକୁ ଦୁଇ କି ତିନ୍ । ମୋତି ବଡ଼ଉ ନଈ ତୁଠକୁ ଝାଡା ଫେରି ଯାଇଥିଲା । ଗୁଡାଖ ଘସୁଘସୁ ଦେଖିଲା ଆଗରେ ଏକ ତାଳଗଛ । ଭଲ କି ଅନେଇଲା ବେଳକୁ ସେ ତାଳଗଛ ଚାଲୁଛି । କ୍ରମେ ସେ ତାଳଗଛ ତା ଆଡ଼କୁ ମାଡି ଆସୁଥିବାର ଦେଖିବା ପରେ ମୋତି ବଡ଼ଉ ଡରିକି ଛାନିଆ । ବରଡା ପତ୍ର ପରି ସେତେବେଳକୁ ତା ଦେହ ଥରିବାକୁ ଲାଗୁଥାଏ । ଛାନିଆରେ ହାଉଳି ଖାଇ ମୋତି ବଡ଼ଉ ସେତେବେଳକୁ ଲୁଗାରେ ଏକ କରିଦେଇଥିଲା ବୋଲି ଆମକୁ କହି ସେ ବହୁତ ହସେ । ପେର୍ଜୁପୁର ବନ୍ଧରେ ତାଳ ଗଛ ଦେଖି ମୋର ଏକଥା ମନ ପଡିଗଲା । ସେତେବେଳକୁ ମୋତେ ପୂରା ଭୟ ଲାଗୁଥାଏ । କେବଳ ଗୋଟାଏ ହୋସ୍‌ରେ ମୁଁ ଚାଲିଥାଏ । ଦେହଟା ସମ୍ପୂର୍ଣ୍ଣ ଭାବେ ଉତ୍ତେଜିତ ହୋଇ ରହିଥାଏ । ଯାହା ହଉ କଷ୍ଟେମଷ୍ଟେ ଯାଇ ଘରେ ପହଞ୍ଚିଲି । ସେତେବେଳକୁ ରାତି ପାଖାପାଖି ଗୋଟାଏ ହୋଇ ଯାଇଥିଲା । ଘରେ ମଧ୍ୟ ଶୋଇ ପଡିଥିଲେ । ଘର କବାଟ ଠକ୍‌ଠକ୍ କରି ବୋଉକୁ ଡାକିଲି । ବୋଉ ଏତେ ରାତିରେ ମୋତେ ଦେଖି ଆଶ୍ଚର୍ଯ୍ୟ ହୋଇଗଲା ! ପ୍ରଥମେ ସେ ମୋତେ ମୁଣ୍ଡଠୁ ଗୋଡ ପର୍ଯ୍ୟନ୍ତ ଅନେଇଲା । ଏତେ ରାତିରେ ଆସିଥିବାରୁ ମୋତେ ବହେ ଗାଳି କଲା । ଯା ତା ଇଛା ଶୋଧି ପକାଇଲା । ଯାଇ ମଙ୍ଗଳା ଠାକୁରାଣୀଙ୍କ ନିକଟରେ ମୁଣ୍ଡ ପିଟି କାନ୍ଦିଲା ଏବଂ ମୋ ପାଇଁ ମଙ୍ଗଳାଙ୍କୁ ଭୋଗ ଯାଚିଲା । ତା ପର ଦିନ ମୋତେ ନେଇ ଢଗା ଗୁଣିଆ ପାଖରେ ଝଡାଫୁଙ୍କା କଲା । ହାତରେ ଏକ ମନ୍ତୁରା ସୂତା ବାନ୍ଧି ଦେଲା । ଏଇଠି ମୋ ଗପ ସଇଲା ।

ମୋ କଥାଟି ଏତିକି, ଫୁଲ ଫୁଟେ କେତକୀ ।...

□



Digitized by srujanika@gmail.com

# ମାଲ୍‌କି, ଟୁନ୍‌ରୀ ଓ
# ଗ୍ରହ ଦେବ୍‌ତାର ପୂଜା





Digitized by srujanika@gmail.com

ଗ୍ରହ ଦେବ୍ତା ରିସା ହେଇଛି ।

ଗଣ୍ଡ୍ ପୂଜା କରିବାକୁ ପଡିବ । କୋଡି, ଆମେୟା, ଆମାଆମା, କୟୁ, ପିୟାୟୁ ଆଦି ଯୋଗାଡ କରିବାକୁ ପଡିବ ବୋଲି ଦିଶାରୀ ଦେବ୍ତା କଇ ଯାଇଛି ।

ମାଲ୍କି ଓ ଟୁନ୍ଦ୍ରୀ ସକାଳୁ ଗୁମ୍ ମାରି ବସିଛନ୍ତି ।

ଆଜି ଟୁନ୍ଦ୍ରୀ ଡ଼ଙ୍ଗରକୁ ଯାଇନି କି ମାଲ୍କି ମାଟି କାମ କରିବାକୁ ଯାଇନି ।

ଦୁହିଁଙ୍କ ମନ କାହିଁ ଆଜି ସକାଳୁ ପହରୁ ଦବି ଯାଇଛି ।

କାମକୁ ଯାଇ ନଥିବାରୁ ତେଣେ କାଂଟ୍ରାଟି ବାବୁ ମାଲ୍କିକୁ ଅନେଇ ଅନେଇ ରିସା ହୋଇଯିବଣି । ମାଲ୍କି କିନ୍ତୁ ଏହାକୁ ଖାତିର୍ କଲାନାହିଁ । ଟୁନ୍ଦ୍ରୀ ରସ ଥାଳିରେ ଥାଳିଏ ମାଣ୍ଡିଆ ପେଜ ଆଣି ମାଲ୍କି ପାଖରେ ଥୋଇଲା । ମାଲ୍କିର କିନ୍ତୁ ପେଜ ପିଇବାକୁ ଇଛା ନଥିଲା । କାରଣ ତାର ମନ ଭଲ ନଥିଲା ।

ଦିଶାରୀ ଦେବ୍ତା ତାଗିଦ୍ କରି ଯାଇଛି । ପାଁଶ୍ ଟଙ୍କା ନ ହେଲେ ଗୋଟେ କୋଡି ହୋଇ ପାରିବ ନାହିଁ । ତା ବାଦେ ପୁଣି ଆମେୟା, ଆମାଆମା, କୟୁ ପାଇଁ ପୁଣି ପାଁଶ୍ ଖର୍ଚ୍ଚ । ଏତେ ଡାବୁ କୋଉଠୁ ଆସିବ ଚିନ୍ତାରେ ପଡି ଯାଇଛନ୍ତି ମାଲ୍କି ଓ ଟୁନ୍ଦ୍ରୀ ।

ଗଣ୍ଡ୍ ପୂଜା ହବ । କୋଡି ଉଙ୍ଗା ହବ । ଆମେୟା, ଆମାଆମା, କୟୁ କଟା ହବ । ସେମାନଙ୍କ ରକ୍ତରେ ଗ୍ରହ ଦେବ୍ତାକୁ ସନ୍ତୁଷ୍ଟ କରାଯିବ । ଗ୍ରହ ଦେବ୍ତା ସନ୍ତୁଷ୍ଟ ହେଲେ ସେମାନଙ୍କ ପ୍ରତି କୃପା କରିବେ । କନ୍ଧମାନଙ୍କୁ ଲନ୍ଦା, ପେଣ୍ଡମ୍ ଓ ମହୁଲି ଦିଆଯିବ । ବହୁତ ଖର୍ଚ୍ଚ । ସେଇ ଚିନ୍ତାରେ ମୁଣ୍ଡରେ ହାତ ଦେଇ ବସିଛନ୍ତି ସକାଳୁ ମାଲ୍କି ଓ ଟୁନ୍ଦ୍ରୀ ।

ଟୁନ୍ଦ୍ରୀ ପାଳିଥିବା ସବୁତକ କୟୁକୁ ଦୁଇଶ ଟଙ୍କାରେ ବିକିଦେଲା । ଟୁନ୍ଦ୍ରୀ ପାଖରେ ଆଉ ଗୋଟିଏ ହେଲେ କୟୁ ନଥିଲା । ଟୁନ୍ଦ୍ରୀ ମନ ଦୁଃଖ କଲା । ପିଲାମାନଙ୍କ ଭଳି ପାଳିଥିଲା ସେମାନଙ୍କୁ । ଟୁନ୍ଦ୍ରୀ ମଧ୍ୟ ବଣରୁ ମହୁଲ ସଂଗ୍ରହ କରି କିଛି ଡାବୁ ରଖିଥିଲା । ସବୁତକ ମିଶେଇଲା ପରେ ଟଙ୍କା



Digitized by srujanika@gmail.com

ତିନିଶ ପାଖାପାଖି ହେଲା ।

ମାଲ୍‌କି ପୂର୍ବରୁ ବହୁତ ଧନୀ ଥିଲା । ଟାନ୍ ପରିଶ୍ରମ କରି ତାବୁ କମେଇଥିଲା । ବିଭାଘର ପରେପରେ ସେ କିନ୍ତୁ ଅଧିକ ଗରିବ ହୋଇ ଯାଇଛି । ଥରେ ଟୁନ୍ଦ୍ରୀକୁ କି ଗୋଟା ମାରାତ୍ମକ ବେମାର ହେଲା ଯେ ଦିଶାରୀ ଦେବ୍‌ତା ଭଲ କରି ପାରିଲା ନାହିଁ । ତାର ଚେରମୂଳି, ଝଡାଫୁଙ୍କା କିଛି ବି କାମ କଲାନି । ମାଲ୍‌କି ତାକୁ ବଡ ଡାକ୍ତରଖାନାକୁ ନେଲା । ସେଠାରେ ତାବୁ ଖାଲି ପାଣି ଭଳିଆ ଉଡିଗଲା । ସେଇଠୁ ତ ମାଲ୍‌କି ଗରିବ ହୋଇ ଯାଇଛି ।

ଟୁନ୍ଦ୍ରୀ ମାଲ୍‌କିକୁ ଗୋଟିଏ ପ୍ରସ୍ତାବ ଦେଲା ।

ସାଉକାର୍ ପାଖରୁ ପାଁଶ୍ ଟଙ୍କା ଉଧାର ଆଣିବାକୁ ଟୁନ୍ଦ୍ରୀ ମାଲ୍‌କିକୁ କହିଲା । ଗଣ୍ଡ ପୂଜା ପରେ ଆମେ ଉଭୟ ମିଶି ସାଉକାର୍ ଘରେ କାମ କରି ସୁଝିଦେବାନି ବୋଲି ଟୁନ୍ଦ୍ରୀ ମାଲ୍‌କିକୁ ବୁଝାଇଲା । କିନ୍ତୁ ପାଁଶ୍ ଟଙ୍କାରେ ସାଉକାର୍ ସୁଧମୂଳ ଯୋଡି ଏମିତି ହିସାବ କରିଦବ ଯେ ଆମେ ପାଞ୍ଚ୍ ବରଷ୍ ତାର୍ ଘରେ ଖଟିଲେ ମଧ୍ୟ ସୁଝି ପାର୍‌ବାନି ବୋଲି ମାଲ୍‌କି କହିଲା ।

ମାଲ୍‌କି ଓ ଟୁନ୍ଦ୍ରୀ ମଧ୍ୟରେ ବିଭାଘର ଆ ମଧ୍ୟରେ ପାଞ୍ଚ ବରଷ୍ ବିତିଗଲାଣି । ହେଲେ ଆଜି ପର୍ଯ୍ୟନ୍ତ ସେମାନଙ୍କ କୋଳ ପୂରଣ ହୋଇ ପାରିଲାନି । ଏଥିନେଇ ମାଲ୍‌କି କେବେ ବି ଟୁନ୍ଦ୍ରୀକୁ ଦୋଷ ଦେଇନି କି ଟୁନ୍ଦ୍ରୀ କେବେବି ମାଲ୍‌କିକୁ ଦାୟୀ କରିନି । ଗ୍ରହ ଦେବ୍‌ତା ରିସା ହୋଇଛି । ସେମାନେ ଆଉ ବା କରିବେ କ'ଣ । ଗ୍ରହ ଦେବ୍‌ତାକୁ ସନ୍ତୁଷ୍ଟ କରିବାକୁ ପଡିବ । ଗ୍ରହ ଦେବ୍‌ତା ମାନ୍‌ଲେ ସେମାନଙ୍କୁ ପିଲା ଦେବେ ।

ମାଲ୍‌କି ସକାଳୁ ସକାଳୁ ବସି ତାର ବିଭାଘର ବେଳ କଥା ମନ ପକାଉଥିଲା ।

ବଡ ଧୁମ୍‌ଧାମ୍‌ରେ ମାଲ୍‌କି ଓ ଟୁନ୍ଦ୍ରୀ ମଧ୍ୟରେ ବାଦି ଘର୍ ହୋଇଥିଲା । ସେତେବେଳ ବଢାରରେ ମାଲ୍‌କି ଟୁନ୍ଦ୍ରୀର ବାପାକୁ ପାଞ୍ଚ୍ ହଜାର ଜଲା ଟଙ୍କା ଦେଇ ଟୁନ୍ଦ୍ରୀକୁ ଘରକୁ ଆଣିଥିଲା । ବିଭାଘର ବେଳେ ଚାରିଟା କୋଡି (ଗାଇ), କୋଡିଏଟା କଯୁ (କୁକୁଡା), ତିନିଟା ଆମାଆମା (ମେଣ୍ଢା), ଚାରିଟା ଆମେୟା (ଛେଳି) କାଟିଥିଲା । ବିଶେଷକରି ତାର ବାହାଘର ବେଳେ ଗୋଟିଏ ପିଆଯୁ (ମାଙ୍କଡ) ମଧ୍ୟ କଟାଯାଇଥିଲା । (କନ୍ଧ ଆଦିବାସୀ ବାହାଘରମାନଙ୍କରେ ଯେଉଁ କନ୍ଧ ମାଙ୍କଡ କାଟି ତାର ମାଂସ କନ୍ଧମାନଙ୍କୁ ଦେଇପାରିଲା ତା ବାହାଘରକୁ ସେତେ ବଡ ବାହାଘର କୁହାଯାଏ ।) ଏହା ସହିତ ସାତ ଡବା ମନ୍ଦ୍ ମଧ୍ୟ ଖର୍ଚ୍ଚ କରିଥିଲା ମାଲ୍‌କି ।

ସମଗ୍ର ଗାଦ୍‌ବାଗୁଡାରେ ଯେତେ କନ୍ଧ ଧାଙ୍ଗିଡି ଥିଲେ ସେମାନଙ୍କ ମଧ୍ୟରେ ଟୁନ୍ଦ୍ରୀ ସେତେବେଳେ ଖୁବ୍ ସୁନ୍ଦରୀ ଥିଲା । କେତେ ଧାଙ୍ଗଡାମାନେ ଟୁନ୍ଦ୍ରୀକୁ ବିଭା ହେବା ପାଇଁ ଆଖେଇଥିଲେ । କିଏ ଜଲା ଟଙ୍କା ଦୁଇ ହଜାର କଲାଣି ତ କିଏ ତିନି ହଜାର । ଟେଣ୍ଡେକାଡଙ୍ଗରୀର ଧାଙ୍ଗଡା କୁଲୁମୀ କନ୍ଧ ଜଲା ରେଟ୍‌କୁ ଚାରି ହଜାର ବଢେଇ ଦେଇଥିଲା । କିନ୍ତୁ ମାଲ୍‌କି ଟୁନ୍ଦ୍ରୀର



Digitized by srujanika@gmail.com

ବାପାକୁ ଏକା ଥରକେ ପାଞ୍ଚ୍ ହଜାର ଡଲା ଦେଇ ସମସ୍ତଙ୍କ ମୁହଁ ବନ୍ଦ କରି ଦେଇଥିଲା ଏବଂ ଟୁନ୍ଦୁରୀକୁ ଘରକୁ ନେଇ ଆସିଥିଲା ।

ବିଭାଘରର କିଛି ଦିନ ପରେ କିନ୍ତୁ ମାଲ୍କି ଗରିବ ହୋଇ ଯାଇଥିଲା ।

ବିଭାଘର କଥା ହେତୁ କରି ମାଲ୍କି ଆଜି ଦୁଃଖ କରୁଛି । ସେତେବେଳେ ଟୁନ୍ଦୁରୀ ବହୁତ ଖୁସିରେ ରହୁଥିଲା । ଡଙ୍ଗରରେ କାନ୍ଦୁଲ୍ ଚାଷ କରି ସେମାନେ ବେଶ୍ ଦି ପଇସା କମେଇପାରୁଥିଲେ । ସେଥିରେ ଦୁଇ ପ୍ରାଣୀ ଚଳି ଯାଉଥିଲେ । ମାଲ୍କିର ଡୋକ୍ରା ବାପାଟା ମଧ୍ୟ ତାଙ୍କ ସାଥୀରେ ରହୁଥିଲା । ତାର କି ଗୋଟା ବେମାରୀ ଥିଲା । ସବୁବେଳେ ଖାଲି ଘଡଘଡ ହଉଥିଲା । ସେ ଯେତେବେଳେ ଘଡଘଡ ହେଉଥିଲା ମାଲ୍କି କିମ୍ବା ଟୁନ୍ଦ୍ରୀ ତାକୁ ଲନ୍ଦା କିମ୍ବା ମହୁଲି ମନ୍ଦ୍ ପିଆଇ ଦେଉଥିଲେ । ଘଡଘଡ ବନ୍ଦ ହୋଇ ଯାଉଥିଲା । ଆଖି ବୁଜି ନିସ୍ତେଜ ହେଇ ଶୋଇ ଯାଉଥିଲା ।

ଆଉ ଘଡିକ ପରେ ଦିଶାରୀ ଦେବ୍ତା ଆସିବ । ଟୁନ୍ଦ୍ରୀ ବେସ୍ତ ହୋଇ ପଡୁଛି ।

ମାଲ୍କି ଟୁନ୍ଦୁରୀକୁ ଘଡିଏ ଚାହିଁଲା । ଟୁନ୍ଦ୍ରୀ ଆଜି ତାକୁ ଅପୂର୍ବ ସୁନ୍ଦରୀ ଲାଗୁଥିଲା ।

ଟୁନ୍ଦୁରୀ ମାଲ୍କିକୁ ମାଣ୍ଡିଆ ପେଜ ଦେଇସାରି ଯାଇ ଗଣ୍ଡ ପୂଜା ପାଇଁ ପୂଜା ସାମଗ୍ରୀ ପ୍ରସ୍ତୁତ କରୁଥିଲା ।

ପିଲାପିଲି ନ ହେବାରୁ ମାଲ୍କି ଓ ଟୁନ୍ଦ୍ରୀ ଉଭୟଙ୍କୁ ଡାକି ଦିଶାରୀ କହିଯାଇଛି ଗଣ୍ଡ ପୂଜା କରିବାକୁ । ଗ୍ରହ ଦେବ୍ତା ସେମାନଙ୍କ ଉପରେ ରିସା ହୋଇଛନ୍ତି । ପିଲାପିଲି କରେଇ ଦେଉ ନାହାନ୍ତି । ଗ୍ରହ ଦେବ୍ତାକୁ କୋଡି ଉଙ୍ଗା (ଗାଇ ମାଂସ)ଦେଇ ସନ୍ତୁଷ୍ଟ କରିବାକୁ ପଡିବ ।

ସେମାନେ ବାଂଝ୍ ବୋଲି ଗୁଡାର ଆଦିବାସୀ ଭାଇମାନେ ତାଙ୍କ ଦୁହିଁଙ୍କୁ ଏକ୍ଟା କରିଛନ୍ତି । ସେମାନେ ବର୍ତ୍ତମାନ ଅଛୁଆଁ ହୋଇଛନ୍ତି । ଜାତି ଭାଇଙ୍କୁ କୋଡି ଉଙ୍ଗା, ଲନ୍ଦା ଦେବା ସହ ଗଣ୍ଡ୍ ପୂଜା କରି ସାରିଲା ପରେ ଯାଇ ଜାତିରେ ମିଶିବେ ।

ମାଲ୍କି ଟେକ୍ରାକୁ ପାଞ୍ଚ୍ଟା ଡବା ଦେଇ ପଠେଇଛି ଭାଟିରୁ ମନ୍ଦ୍ ଆଣିବାକୁ । ସାମ ସାଆନ୍ତା ଯାଇଛି ଆମାଆମା, ଅମେୟା, କୟୁ, ହଂସ୍ ଆଣିବାକୁ । ଦିଶାରୀ ଆଉ ଟିକେ ଗଲେ ଆସିଯିବ । ପୂଜା କାମ ଆରମ୍ଭ ହେବ । କିନ୍ତୁ ମାଲ୍କି ମନରେ ଖୁସି ନାହିଁ । ଦିନ ଥିଲା ମାଲ୍କି ଓ ଟୁନ୍ଦ୍ରୀ ଦୁହେଁ ବେଶ୍ ହସଖୁସିରେ ଦିନ କାଟୁଥିଲେ ।

କୁଆଁରୀ ବିନ୍ ଦେଖା ହୋଇଛି ଯାଇ କୋଶେ ଦୂରରେ । ଦିଶାରୀ ନିଜେ ଗୋଟିଏ ଦିନ ଓପାସ ରହି କୁଆଁରୀ ବିନ୍ ଖୋଜିଛି । ମଙ୍ଗରାଜ ଡଙ୍ଗର ପାର ହୋଇଗଲା ପରେ ଯାଇ ପଡିବ ଏହି କୁଆଁରୀ ବିନ୍ ।

ମାଲ୍କି ସମସ୍ତଙ୍କୁ ସେଠାକୁ ପଠାଇବା ପରେ ନିଜେ ଗଲା କୁଆଁରୀ ବିନ୍ ଆଡେ । ଦିଶାରୀ ସମସ୍ତଙ୍କ ପୂର୍ବରୁ ସେଠାରେ ପହଞ୍ଚିଛି । ଟୁନ୍ଦ୍ରୀ ମଧ୍ୟ ଅନ୍ୟ ଧାଙ୍ଗ୍ଡିମାନଙ୍କ ସହିତ କେତେବେଳୁ



Digitized by srujanika@gmail.com

ଯାଇ ସାରିଛି । ଟୁନ୍ଦ୍ରୀର ମନ ଆଜିକାଲି ଭଲ ରହୁନି ବୋଲି ମାଲ୍କି ଲକ୍ଷ୍ୟ କରୁଛି ।

ମାଲ୍କି ପିନ୍ଧିଥିଲା ଏକ ଧଳା ଗାମୁଛା ଏବଂ ଟୁନ୍ଦ୍ରୀ ପିନ୍ଧିଥିଲା ମଧ୍ୟ ଏକ ଧଳା ଗାମୁଛା । ଟୁନ୍ଦ୍ରୀର ବଢନ୍ତା ଛାତିକୁ ସେହି ଧଳା ଗାମୁଛା ଆକଟ କରିପାରୁ ନଥିଲା । ମାଲ୍କିର ସବୁବେଳେ ସେଇଠି ନଜର ପଡୁଥିଲା । ମାଲ୍କି ଭାବୁଥିଲା ଟୁନ୍ଦ୍ରୀର ସେ ଫୁଲାଫୁଲା ଛାତି କଥା । କିନ୍ତୁ ଦୁଃଖ କଲା ଲୋକେ ସେମାନଙ୍କୁ ବାଂଝ୍ କହୁଛନ୍ତି ।

ଟୁନ୍ଦ୍ରୀ ଆଜି ପ୍ରକୃତରେ ସୁନ୍ଦରୀ ଲାଗୁଛି । ମାଲ୍କି ଅନ୍ୟମନସ୍କ ହୋଇ ପଡୁଥିଲା ।

ଦିଶାରୀ ପୁତ୍ଲା ପୁତ୍ଲା କରି ତିନିଟି ପୁତ୍ଲା ତିଆରି କଲା ମାଟିରେ ।

ବଡ ପାଟିରେ ମନ୍ତ୍ର ଉଚ୍ଚାରଣ କଲା ।

ମାଲ୍କି ଓ ଟୁନ୍ଦ୍ରୀ ବସିଲେ ସେଇ ତିନିଟା ପୁତ୍ଲା ଆଗରେ ।

ଦିଶାରୀ ବହୁତ ବଡ ପାଟିରେ ମନ୍ତ୍ର ଉଚ୍ଚାରଣ କଲା । କହିଲା:

ଗ୍ରହ ଦେବ୍ତାମାନେ ଆଉ ରିସା ହୁଅ ନାହିଁ । ମାଲ୍କି ତମକୁ କୋଡି ଦେଲା, ଆମାଆମା ଦେଲା, ଅମେୟା ଦେଲା, କୟୁ ଦେଲା । ମନ୍ଦ୍ ଦେଲା । ତମେ ଏଥର ସନ୍ତୁଷ୍ଟ ହୁଅ । ତାକୁ ପିଲାବଚ୍ଚା ଦିଅ ।

ମାଲ୍କିର ବାପା ଏକ ଛୋଟ ଗୁମ ଉଠି ନଥିବା ପ୍ରାୟ ପାଞ୍ଚଛଅ ଦିନର କୁକୁଡା ଛୁଆକୁ ପୂଜା ସ୍ଥଳକୁ ଆଣି ଦିଶାରୀଙ୍କୁ ଦେଲା । ତାପରେ ସେଇ କୁକୁଡା ଛୁଆ ଦେହରେ ନାଲି ରଙ୍ଗ ବୋଳି ଦିଆଗଲା । ସେଇ କୁକୁଡା ଛୁଆ ଆଗରେ କିଛି ଅରୁଆ ଚାଉଳ ପକାଗଲା । ସେ ଟିକି ଛୁଆଟି ସେହି ଚାଉଳରୁ ଚାରି ପାଞ୍ଚଟା ଖୁଣ୍ଟି ଖୁଣ୍ଟି ଖାଇଲା । ତା ପରେ ଦିଶାରୀ କହିଲା ତମ କଥା ଗ୍ରହ ଦେବ୍ତା ଶୁଣିଛନ୍ତି । ଏବଂ ପୁଣି କହିଲା: ଯଦି ସେହି ବଚ୍ଚା କୟୁ ଚାଉଳ ଖୁଣ୍ଟି ଖୁଣ୍ଟି ଖାଇ ନଥାନ୍ତା ତେବେ ଗ୍ରହ ଦେବ୍ତା ତମମାନଙ୍କ ଉପରେ ରିସାରେ ଅଛନ୍ତି ବୋଲି ଜାଣିଥାନ୍ତ ।

ଦିଶାରୀର ଏହି ଆଶ୍ୱାସନା ପରେ ମାଲ୍କି ଓ ଟୁନ୍ଦ୍ରୀ ଖୁସି ହେଲେ ।

ସେମାନେ କ'ଣ ନାଇଁ କ'ଣ ଭାବିଲେ । ଏଣିକି ତାଙ୍କର ପିଲା ହବ । ପିଲା ବଢିଲେ ତାଙ୍କୁ ତଙ୍ଗର କାମରେ ସାହଯ୍ୟ କରିବ । କାହୁଲ ଚାଷ କରି ପୋଷିବ । ତାର ବିଭାଘର ହେବ ।

ସେ ସନ କିନ୍ତୁ ଗୁଡାରେ କାଲ୍ରା ବ୍ୟାପିଲା । ଦେଓ ପେନୁ ରିସା ହେଲେ । ସବୁ ଡୋକ୍ରା, ଡୋକ୍ରୀ, ଧାଙ୍ଗ୍ଡା, ଧାଙ୍ଗ୍ଡି ଡଗ୍ଡି କରି ବସ୍ତିରେ ବୁଲାଇଲେ । ଦେଓ ପେନୁକୁ ଧୂପ୍ଧୂପ୍ଣୀ ଦେଲେ । ଟୋଲା ଫଲ୍ ପୋଡିକରି ଧୂପ୍ଧୂପ୍ଣୀ କଲେ । ଗତବର୍ଷ ଦେଓ ପେନୁକୁ କୋଡି ଉଙ୍ଗା କି ଲନ୍ଦା ଭଲକି ବଳେଇକୁଳେଇ ଦେଇ ନଥିବାରୁ ଦେଓ ପେନୁ ରିସା ହୋଇଛନ୍ତି ବୋଲି ଦିଶାରୀ ସମସ୍ତଙ୍କୁ ସତର୍କ କରେଇ ଦେଲା । ଏଥର ଦେଓ ପେନୁ ପଡିଶି ମୁଣ୍ଡ ନବ ବୋଲି ଦିଶାରୀ ସତର୍କ ବାଣୀ କଲା । ସମସ୍ତେ ଗୁଡାବାସୀ ଭୟଭୀତ ହୋଇ ପଡିଲେ । କିଏ କୁକୁଡା ଆଣି ମୋଡି ଦେଲା,



Digitized by srujanika@gmail.com

କିଏ ମେଣ୍ଢା ଆଣି କାଟି ଦେଲା । କିନ୍ତୁ ଏହି ସମୟରେ ମାଲ୍‌କି ପାଖରେ କିଛି ନଥିଲା । ରିସା ହୋଇଥିବା ଦେଓ ପେନୁକୁ ସେ କିଛି ଦେଇ ପାରିଲା ନାହିଁ । ଦେଓ ପେନୁ ଏତେ ରିସା ହୋଇଥିଲା ଯେ, ସେ ସନ ଗୁଡାରୁ ଦଶ୍ ମୁଣ୍ଡ କାଲ୍‌ରାରେ ନେଇଗଲା । ମାଲ୍‌କି ଦେଓ ପେନୁକୁ କୁକୁଡା ଦେଇ ନ ପାରିବାରୁ ରିସାରେ ଦେଓ ପେନୁ ଟୁନ୍ଦ୍‌ରୀର ମୁଣ୍ଡ ନେଇଗଲା ।

ଗ୍ରହ୍ ଦେବ୍‌ତା ରିସା ଖଣ୍ଡନ କରିବା ପରେ ଟୁନ୍ଦ୍‌ରୀ କିନ୍ତୁ ସତକୁସତ ଗର୍ଭବତୀ ହୋଇଥିଲା । ଗୁଡାରେ ଦେଓ ପେନୁର ରିସା ବେଳକୁ ଟୁନ୍ଦ୍‌ରୀର ସାତ ମାସ ଗର୍ଭ ହୋଇଥିଲା । ଟୁନ୍ଦ୍‌ରୀ ପେଟରେ ପିଲା ରଇଲା ଦିନୁ ମାଲ୍‌କି ତାକୁ କଉଣସି କାମ ପାଇଟି କରେଇ ଦେଉ ନଥିଲା । ଟୁନ୍ଦ୍‌ରୀକୁ ଡଙ୍ଗର ଯିବା ବନ୍ଦ କରେଇ ଦେଇଥିଲା । ସେଠାରେ ଡୁମାର ନଜର ପଡିଯିବ! ଟୁନ୍ଦ୍‌ରୀ କେବଳ ଦଉଡିଆ ଖଟିଆଟିରେ ଶୋଇ ରହୁଥିଲା । କିନ୍ତୁ ଦେଓ ପେନୁ ରିସା କରି ଟୁନ୍ଦ୍‌ରୀକୁ ସବୁଦିନ ପାଇଁ ଶୁଆଇ ଦେଲେ ।

ଏହା ପରେ ମାଲ୍‌କି ଟୁନ୍ଦ୍‌ରୀକୁ ହରେଇ ପାଗଳ ହୋଇଗଲା ।

ସେ ଆଉ କାମ ଧନ୍ଦାକୁ ଗଲା ନାହିଁ ।

ସବୁଆଡେ ଟୁନ୍ଦ୍‌ରୀକୁ ଖୋଜିବାକୁ ଲାଗିଲା ।

ବଣ, ଡଙ୍ଗର, ଝୋଲା, ଡଙ୍ଗରୀ ସବୁଆଡେ ଟନ୍ଦ୍‌ରୀକୁ ଖୋଜିବାକୁ ଲାଗିଲା ।

ସବୁଠି ବସିବସି କାନ୍ଦିଲା । ଝୋଲାରେ, ଗଛମୂଳେ ଆଉ ଡଙ୍ଗରରେ ସବୁଠି ବସିବସି ଖାଲି କାନ୍ଦିଲା ମାଲ୍‌କି । ତା ଲୁହ ଝରଣା ହୋଇ ବହିଲା ଅଳସି କିଆରୀ ଦେଇ ।

□



Digitized by srujanika@gmail.com

ଭୁବନେଶ୍ୱର ପୁସ୍ତକ ମେଳା-୨୦୦୭ "ରବି ପଟ୍ଟନାୟକ ସ୍ମୃତି ପୁରସ୍କାର'
ହାସଲ କରିଥିବା ରଂଜନ ପ୍ରଧାନଙ୍କ ସ୍ମରଣୀୟ ଗଳ୍ପ

# ବାପା





Digitized by srujanika@gmail.com

**ବା**ପା ମାଂସ ରାନ୍ଧୁଥିବେ; ଆମେସବୁ ତୁଲି ଚାରିପାଖେ ବେଢି ବସିଥିବୁ । ଆହା କି ବାସ୍ନା ମାଂସ ତର୍କାରୀ ବାପା ରାନ୍ଧୁଥିବେ। ବାପା ମାଂସ କଷୁକଷୁ ଆମକୁ ଖଣ୍ଡେଖଣ୍ଡେ ଚାଖିବାକୁ ଦେଉଥିବେ । ଆମେ କହୁଥିବୁ ହଁ ସିଝିଗଲାଣି । ଲୁଣ ଠିକ୍ ହୋଇଛି । ତର୍କାରୀ ବଢ଼ିଆ ହୋଇଛି । ଏବଂ ବାପା ଆମମାନଙ୍କୁ ନେଇ କ୍ରମେ ଆନନ୍ଦଲାଭ କରୁଥିବେ । ଆମମାନଙ୍କୁ ତାଙ୍କର ସମ୍ପଦ ବୋଲି ଭାବି ଗର୍ବ କରୁଥିବେ ଏବଂ ଭାବପ୍ରବଣ ହୋଇ ଉଠୁଥିବେ ।

ସେତେବେଳେ ସନ୍ଧ୍ୟାବେଳ ହୋଇଥିବ । ବୋଉ ଲମ୍ପା ଘରେ ପାଣି ସିଞ୍ଚି ଝାଡୁ କରିବ । ବାସନକୁସନ ସଫା କରି ଆମ ପାଇଁ ଖାଇବା ରେଡି କରିବ । ଏହା ମଧ୍ୟରେ ବାପା ବାଡିପଟ ଅଗଣାରୁ ଯାଇ ହାତଗୋଡ ଧୂଆପୋଛା କରି ଆସି ଆମ ପାଖରେ ବସିବେ । ସବୁତକ ତର୍କାରୀ ଗୋଟିଏ ବଡ ବେଲାରେ ବାଢିବାକୁ ବାପା ବୋଉକୁ ନିର୍ଦ୍ଦେଶ ଦେଉଥିବେ ।

ଏବଂ ବୋଉ ଉଦ୍ଦେଶ୍ୟରେ କହୁଥିବେ: ଛୁଆମାନେ ମନ ଶାନ୍ତି କରି ଖାଆନ୍ତୁ । ବାପା ବି ଆମ ସାଙ୍ଗରେ ବସି ଖାଇବେ । ମୁଁ ଦେଖିଛି ବାପା ଆମ ସାଙ୍ଗରେ ଖାଉଥିଲାବେଳେ ଭଲ କରି ଖାଇ ପାରନ୍ତି ନାହିଁ । ଟୁକୁ, ମିଲି, ମିଟୁନା ଓ ନିନି ଏମାନେ ସବୁ ବାଛିବାଛି ମାଂସତକ ଖାଇଦେଉଥିବେ । ବାପା ଖାଲି ହାତ ଟେକି ବସିଥିବେ । କିନ୍ତୁ ମନେମନେ ସେ ବହୁତ ଖୁସି ହେଉଥିବେ ।

କହିବେ: ପିଲାମାନେ ଭଲକି ଖାଅ । ତମ ପାଇଁ ଆଣିଛି । ତମେମାନେ ଖାଇବନି ତ କିଏ ଖାଇବ? ସେତେବେଳେ ବାପା କିନ୍ତୁ ଭାରି ତୃପ୍ତ ଲାଗୁଥିବେ । ସମ୍ପୂର୍ଣ୍ଣ ଲାଗୁଥିବେ ।

ବାପାଙ୍କ ସେହି ଭାବମୂର୍ତ୍ତି ଦେଖିବା ପରେ ମୋର ହଠାତ୍ ବାପା ହୋଇଯିବାକୁ ଇଚ୍ଛା ହେଉଥିବ । ମୁଁ ଭାବୁଥିବି ମୁଁ ବାପା ହୋଇ ଯାଆନ୍ତି କି? କାରଣ ବାପାମାନେ ସବୁବେଳେ ବଡ ଓ ମହାନ୍ । ବାପାମନେ ଦାୟିତ୍ୱବାନ୍ ଏବଂ ଧୈର୍ଯ୍ୟବାନ୍ ।

ଆମେସବୁ ଖାଇ ସାରିଲେ ବୋଉ ବାସନକୁସନ ଭଲକି ବନମାଟିରେ ମାଜି ଧୋଇବ । ତା ପରେ ନିଜେ ଗାଧୋଇବ । ଘରେ ଗଙ୍ଗା ଜଳ ସିଞ୍ଚିବ । ବଡ଼ ବୋହୂତ! ଦୁନିଆ ନୀତିନିୟମ । ଘର



Digitized by srujanika@gmail.com

ଭଲ ଭାବେ ସଫାସୁତୁରା କରିବ । ଆମ ପାଇଁ ବିଛଣା ରେଡି କରିବ । ବାପାଙ୍କ ପାଇଁ ପାନ ଭାଙ୍ଗିବ । ବାପାଙ୍କୁ ପଙ୍ଖା କରିବ । ଗୋଡ ହାତ ଘସାମୋଡା କରିବ । ତା ପରେ ଯାଇ ସେ ଓ ଢେଙ୍କିମା ସାଙ୍ଗ ହୋଇ ଖାଇବେ । ସେଉଠୁ ଢେଙ୍କିମା ଖାଉଖାଉ ଢେଙ୍କାନାଳଠୁ ଢେଙ୍କିଶାଳ ପର୍ଯ୍ୟନ୍ତ କଥାର ମୁଣା ଖୋଲିବ । ଏଇଟା ଭଲ ହୋଇନି ସେଇଟା ଭଲ ହୋଇନି ଦୁନିଆ ବାଛୁଥିବ । ବୋଉ ସବୁ ଶୁଣି ଚୁପ୍ ରହୁଥିବ । କେବେବି ବାପାଙ୍କୁ କହୁ ନଥିବ । ବୋଉର ଏହି ଗୁଣ ଯୋଗୁଁ ସେ ସମସ୍ତଙ୍କ ପ୍ରିୟପାତ୍ର ହେଉଥିବ । ଢେଙ୍କେ ମଧ୍ୟ ବୋଉକୁ ଆଦର କରୁଥିବେ । ବୋଉର ହାତ ରନ୍ଧାର ତାରିଫ୍ କରୁଥିବେ । ବାପାଙ୍କୁ ପ୍ରଶଂସା କରୁଥିବେ । ବୋହୂ ଏ ଘରର ଲକ୍ଷ୍ମୀ ବୋଲି କହୁଥିବେ । ଢେଙ୍କିମା ଚିଡିଚିଡି ହଉଥିବ ଓ ବାପାଙ୍କୁ ଅଧିକା ଟେକୁଥିବ । ଏବଂ ମୁଣ୍ଡକୁ ଅନ୍ୟ ଏକ ଚିନ୍ତା ନ ପଶିବା ପର୍ଯ୍ୟନ୍ତ ସେମିତି ଗାରୁଗାରୁ ହଉଥିବ ।

ଶୋଇବା ବିଛଣାକୁ ଗଲାବେଳେ ବାପା ବିଡି ଟାଣିବେ । କିଛି ସମୟ ଉପରକୁ ଅନେଇ କ'ଣ ଭାବିବେ । ମୋର ବି ସେତେବେଳେ ଏମିତି ଉପରକୁ ଅନେଇ କିଛି ଭାବିବାକୁ ମନ ହେଉଥିବ ଏବଂ କ୍ରମେ ବାପା ହେବାକୁ ଇଛା ହେଉଥିବ । ଏବଂ ବାପାମାନଙ୍କର କେତେ ବର୍ଡନ୍, କେତେ ଚାପ ସେ କଥା ଚିନ୍ତା କରିବା ପରେ ଆଉ ବାପା ହେବାକୁ ଇଛା ହେଉ ନଥିବ । ବାପା ହେବା ବେଶି ହୋଇଗଲା ଭାବିଭାବି ମୋତେ ନିଦ ଆସୁଥିବ । ଏବଂ ଶୋଇ ପଡୁଥିବି ଆସନ୍ତାକାଲି ସକାଳ ପର୍ଯ୍ୟନ୍ତ ।

ସକାଳୁ ବୋଉ ବାପାଙ୍କ ପାଇଁ ଏକ ବଡ କଂସାରେ କଂସାଏ ନାଲି ଚା କରିଆଣୁଥିବ । ବାପା ସବୁତକ ପିଇ ଦେଉଥିବେ । ମୋର ନାଲି ଚା ପିଇବାକୁ ଇଛା ହେଉଥିବ କିନ୍ତୁ ବାପା ମନା କରୁଥିବେ । କହୁଥିବେ ତମେମାନେ ପାଠ ପଢୁଛ, ଚା ପିଅ ନାହିଁ । ଆମେ ଚାଷୀ ଲୋକ ପିନା ଚା ପିଇବୁ । ପିଲାମାନେ ଚା ପିଅନ୍ତି ନାହିଁ ବୋଲି ଆମକୁ ବୁଝାଇ ଦେଉଥିବେ । ଆମେ ମୁଢି ଡାଲା ଧରି ପିଣ୍ଡାରେ ଖାଉଥିବୁ ଏବଂ ପାଠ ପଢୁଥିବୁ ।

ବାପା ସକାଳୁ ଗୋରୁଙ୍କୁ ତୋରାଣୀ ଦେଇ ତାଙ୍କ ପାଖରେ ନଡ଼ା ପକେଇ ସାରିବା ପରେ ଆସି ନିଜ ନିତ୍ୟକର୍ମ ସାରିବେ । ଦାନ୍ତପତ୍ର ଘସି ସାରିବା ପରେ ବୋଉ ବାଢିଥିବା ପଖାଳ କଂସା ପାଖରେ ବସିବେ । ବୋଉ ପଖାଳ ସାଙ୍ଗକୁ ଲେଉଟିଆ ଶାଗ ଭଜା, ବଡ଼ିଚୁରା ଓ ଆଳୁ ପୋଡ଼ା କରିଥିବ । ଖାଇସାରି ବାପା ବିଡି ଟାଣିବେ । ପାଞ୍ଚ ଦଶ ମିନିଟ୍ ବିଶ୍ରାମ ନେବେ । ତା ପରେ ହଳ ଯୋଡିବେ । ଯେଉଁ ଦିନ ସାତମାଣିଆକୁ ହଳ ଯିବାର ଥିବ ସେଦିନ ବାପା ନିତ୍ୟକର୍ମ ସଅଳ ସାରିବେ । ବଳଦଙ୍କୁ ଶୀଘ୍ରଶୀଘ୍ର ଖାଇବାକୁ ଦେଇ ସେମାନଙ୍କୁ ପ୍ରସ୍ତୁତ କରାଇବେ । ସାତମାଣିଆ ଜମି ଆମ ଗାଁଠାରୁ ତିନି କୋଶ ଖଣ୍ଡେ ଦୂର ହେବ । ସେଠିକି ଆମର ଯେବେ ହଳ ଯିବ ସେଦିନ



Digitized by srujanika@gmail.com

ବୋଉ ଭାରି ବ୍ୟସ୍ତ । କାରଣ ସାଧୁଆବେଳକୁ ସେଠାକୁ ପାଞ୍ଚ ଜଣଙ୍କ ପାଇଁ ଖାଇବା ବିଲକୁ ଯିବ ।

ଚୈତ୍ର ମାସରେ ଆମ ଗାଁ ପାଖ ଅନ୍ଧୁଳିରେ ପ୍ରସିଦ୍ଧ ଚଇତି ମେଳା ହେବ । ଆମେସବୁ ବାପାଙ୍କ ସାଙ୍ଗରେ ଯିବୁ । କିଏ ବାପାଙ୍କ ହାତ ଧରି ଚାଲିବେ ସେଥିନେଇ ଟୁକୁ, ମିଲି, ମିଟୁନା ଓ ନିନିଙ୍କ ମଧ୍ୟରେ ପ୍ରତିଯୋଗିତା ହେବ । ବାଟ ସାରା ବାପାଙ୍କ ସହ ଗପିଗପି ଚାଲିଥିବେ । ଅନ୍ଧୁଳି ଆଉ କେତେ ବାଟ ରହିଲା କହି କହି ଟୁକୁ, ମିଲି ବାପାଙ୍କୁ ବ୍ୟସ୍ତ କରି ପକାଉଥିବେ । ବାପା କହୁଥିବେ ଆଉ ଅଳ୍ପ ବାଟ । ଆମେ କୁସୁନୁପୁର, ମଙ୍ଗରାଜପୁର ଗାଁ ଦେଇ ଏକ ବିଲ ରାସ୍ତା ପାର ହେଲା ପରେ ଅନ୍ଧୁଳି ମେଲଣ ପଡିଆରେ ପହଞ୍ଚି ଯିବୁ । ବିରାଟ ମେଲଣ ପଡିଆ । କେତେ ରଙ୍ଗର ଲାଇଟ୍ ଜଳୁଥିବ । ମାଇକ୍ ବାଜୁଥିବ । ହଜାର ହଜାର ଲୋକ । କି ଭିଡ ହୋଇଥିବ!

ବାପା ଆମକୁ ବିକଳି ସାହୁ ଜଳଖିଆ ଦୋକାନକୁ ନେବେ । ସେତେବେଳକୁ ଟୁକୁ, ମିଲି, ମିଟୁନା ଓ ନିନିଙ୍କର ପାଟିରୁ ଲାଳ ବୋହି ସାରିଥିବ ଏବଂ ଆଖି ବଡ଼ବଡ଼ ହୋଇ ଯାଇଥିବ । ସେମାନଙ୍କର କରୁଣ ଆଖିମାନେ ଥାଳିରେ ପଡି ରହିଥିବା ହସହସ ସତେଜ ଜିଲାପିମାନଙ୍କୁ ଭେଦ କରି ସାରିଥିବେ । ବାପା, ବିକଳି ସାହୁକୁ ଗରମ ଗରମ ଜିଲାପି ଦେବାକୁ ଅର୍ଡର ଦେବେ । ଟୁକୁ, ମିଲି ଅଧିକରୁ ଅଧିକ ବ୍ୟସ୍ତ ହୋଇ ପଡୁଥିବେ । ମୋ ଗୋଡ଼ ଉପରେ ଚଢି ଯାଉଥିବେ । ଖାଇବା ପାଇଁ ମରି ଯାଉଥିବେ! ମୋର ରାଗ ପ୍ରବଳ ଚଢିଯାଉଥିବ । କିନ୍ତୁ କିଛି କହୁ ନଥିବି । ଜିଲାପି ଖାଉଥିବା ବେଳେ ରସ ବୋହି ନିନି ଓ ମିଟୁନାର ସାର୍ଟ, ପେଣ୍ଟ, ମୁହଁ, ହାତ ସବୁ ଅସନା ହୋଇଯିବ । ବାଧ୍ୟ ହୋଇ ମୁଁ ସେମାନଙ୍କ ଉପରକୁ ବିଗିଡିବି । ମୋର ରାଗ ମୁହଁ ଦେଖି ସେମାନେ କିଛି ମାତ୍ରାରେ ବାଟକୁ ଆସୁଥିବେ ।

ବାପା କିନ୍ତୁ କହିବେ: ହଉ ହେଲା ହେଲା, ପିଲାମାନେ । ଘରକୁ ଗଲେ ବୋଉ ସଫା କରି ଦବନି!

ନିନି କହିବ ମୁଁ ବଡ଼ ବେଲୁନ୍ ନେବି । ମିଟୁନା କହିବ ମୋର ବନ୍ଧୁକ ଓ ବାଇସ୍କୋପ୍ । ମିଲି କିଛି ନ କହି ଚାର୍ଟ୍ ଦୋକାନ ଆଡକୁ ଅନେଇବ । ବାପା ତାକୁ ଚାର୍ଟ୍ ଖୁଆଇବେ । ଆମେ ବାପାଙ୍କ ସାଥୀରେ ବୁଲିବୁଲି ମେଳା ଦେଖିବୁ । ରାତି ବେଶି ହୋଇଯିବ । ଆମେସବୁ ପୁଣି ସାଥୀ ହୋଇ ସେଇ ବିଲ ରାସ୍ତାରେ ଘରକୁ ଫେରିବୁ । ବାପା ପ୍ରାୟ ଦୁଇ କିଲୋ ଜିଲାପି ଘରକୁ ଆଣିଥିବେ । ଜେଜିମା ଅନେଇ ବସିଥିବ । ଘରେ ପହଞ୍ଚିଲା ପରେ ବୋଉ ଜିଲାପି ପୁଡିଆ ଖୋଲିବ । ଜେଜିମାକୁ ଖାଇବାକୁ ଦବ । ଏବଂ ଜେଜେଙ୍କୁ ମଧ୍ୟ ଦେବ । ଜେଜେ ମିଲି ସାଙ୍ଗରେ ଥଟ୍ଟାମଜା କରିବେ । ଆମେ ତ ଜିଲାପି ଖାଇକି ଆସିଥିବୁ ବୋଉ ଦେଲେ ମନା କରିବୁ । ନିନି କିନ୍ତୁ ଲୋଭରେ ପୁଣି ଗୋଟିଏ ଖାଇଦବ । ଏବଂ ସାଙ୍ଗେସାଙ୍ଗେ ବାନ୍ତି କରିବ ଓ ଦେହ ଖରାପ ହେବ ।



Digitized by srujanika@gmail.com

ସଙ୍ଗେସଙ୍ଗେ ଠୋ ଠୋ କରି ମିଟୁନା ଫୁଟେଇ ଦବ ଦୁଇଟା ଗୁଳି ମେଳାରୁ ଆଣିଥିବା ତା ବନ୍ଧୁକରୁ । ଢେଙ୍କିମା ଚମ୍‌କି ପଡିବ । ସେମାନେ ସମସ୍ତେ ଫେଁ ଫେଁ କରି ହସି ଉଠିବେ । ମିଟୁନା କହିବ ରହ ରହ ବୁଢ଼ୀ, କାଲି ତୁ କେନ୍ଦ୍ରାପଡ଼ାର ବଳଦେବ ମନ୍ଦିର ବି ଏଇଠି ବସି ଦେଖିବୁ । ମୁଁ ଗୋଟିଏ ଯନ୍ତ୍ର ଆଣିଛି ସେଥିରେ ଏଇଠି ବସି ସବୁକଥା ଦେଖିହବ । ବୁଢ଼ି କିନ୍ତୁ ମୁହଁ ମୋଡି ମିଟୁନା ଉଦ୍ଦେଶ୍ୟରେ କହିବ ଏଇ ଟୋକାଟା ପୂରା ବାଳୁଙ୍ଗା ହୋଇଗଲାଣି । ବାପ ତ ମୁହଁ ବଢ଼ଉଛି, କହିବୁ କାହାକୁ? ସେଇଠୁ ନିନିର ବେଲୁନ୍ ଫାଟିଯିବ । ସେ ଭେଁ କିନା ରା ଧରି କାନ୍ଦିବ । ତାକୁ ବୋଉ ସମ୍ଭାଳିବ ।

ସନ୍ଧ୍ୟାରେ ବାପା ପିଣ୍ଡାରେ ବସି ଆମକୁ ଗପ କହୁଥିବେ । ବୋଉ ମୁଢ଼ି ଡାଲା ଆଣି ବାପାଙ୍କ ପାଖରେ ଥୋଇ ଦେଉଥିବ । ଆମେସବୁ ବାପାଙ୍କୁ ଘେରି ବସିଥିବୁ । ମୁଢ଼ି ଖାଉଥିବୁ ଏବଂ ଅଧେରୁ ଅଧିକ ବୁଣୁଥିବୁ । ବାପା ନାଲି ଚା ପିଉଥିବେ । ଏବଂ ବିଡି ଟାଣୁଥିବେ । ଏବଂ ଧୂଆଁ ଛାଡୁଥିବେ । ମିଟୁନା ଓ ନିନି ସେ ଧୂଆଁକୁ ଧରିବାକୁ ଚେଷ୍ଟା କରୁଥିବେ । ଧରି ପାରୁ ନଥିବେ । ବାପା ମୁରୁକି ମୁରୁକି ହସୁଥିବେ ଏବଂ ମୁଁ ବି ।

ମୁଁ ଗାଁ ହାଇସ୍କୁଲରୁ ମେଟ୍ରିକ୍ ପାସ୍ କଲାପରେ ବାପା ପ୍ରସ୍ତାବ ଦେବେ କଲେଜରେ ପଢ଼ିବାକୁ । କେନ୍ଦ୍ରାପଡା କଲେଜରେ ମୋର ନାଁ ଲେଖାଯିବ । ପ୍ଲସ୍ ଟୁ ସାଇନ୍‌ସରେ । ପିସିଏମ୍ କମ୍ବିନେସନ୍ ଏବଂ ଫୋର୍ଥ୍ ଅପ୍‌ସନାଲ୍ ବାୟୋଲୋଜି । ଗାଁ ହେଡ୍ ମାଷ୍ଟର ପାଖକୁ ବାପା ଘନଘନ ଧାଉଁଥିବେ । ମୋ ପାଠ ପଢ଼ା ନେଇ ତାଙ୍କୁ ପଚାରି ବୁଝୁଥିବେ ।

ମୋ ପାଠ ପଢ଼ାକୁ ନେଇ ବାପା ବହୁତ ଖୁସି ହେଉଥିବେ । ବୋଉକୁ କହୁଥିବେ: ପୁଅ ପାଇଁ ମୁଢ଼ି, ଚୁଡା ଓ ଟଙ୍କା ଯୋଗାଡ କର । ମୁଁ ଆର ସପ୍ତାହକୁ ଯିବି ତା ପାଖକୁ । ବାପା ସେହି ପୁରୁଣା କାଳିଆ ଧୋତି ଓ ପଞ୍ଜାବି ଖଣ୍ଡେ ଗଳେଇ ମୋ ପାଖକୁ ଆସିଥିବେ । ମୋ ସାଙ୍ଗ ପିଲାମାନେ ବାପାଙ୍କୁ ପ୍ରଣାମ କରିବେ । ବାପା ମୋର ସାଙ୍ଗମାନଙ୍କ ପାଇଁ ବୋଉ ପ୍ରସ୍ତୁତ କରିଥିବା ଆରିଷା ଆଉ ପୋଡ ପିଠା ଆଣିଥିବେ । ପୋଡ ପିଠା ଖାଇ ମୋର ସମସ୍ତ ସାଙ୍ଗ ଖୁସି ହେଉଥିବେ । ବାପା ଆତ୍ମସନ୍ତୋଷ ଲାଭ କରୁଥିବେ । ମୋର ଦେହ ମୁଣ୍ଡ କଥା ପଚାରି ବୁଝୁଥିବେ । ମୋ ପାଇଁ ବୋଉର ବ୍ୟସ୍ତତା ସମ୍ପର୍କରେ କହୁଥିବେ ଏବଂ ସମସ୍ତଙ୍କୁ ଆଶିର୍ବାଦ କରି ଶେଷରେ ଫେରୁଥିବେ । ବାପା ଫେରିଗଲା ବେଳେ ମୋତେ ଦୁଃଖ ଲାଗୁଥିବ । ତାଙ୍କ ସାଙ୍ଗରେ ଗାଁକୁ ଫେରିଯିବାକୁ ଇଛା ହେଉଥିବ ।

ମୋର ପ୍ଲସ୍ ଥ୍ରୀ ବେଳେ ଢେଙ୍କିମାର ମୃତ୍ୟୁ ହୋଇଯାଇଥିବ । ବାପା ତାଙ୍କ ବୋଉକୁ ହରାଇ ଅଧିକ ଭାଙ୍ଗି ପଡିଥିବେ । ମୁଁ ମଧ୍ୟ ମାସେ କାଳ ଗାଁରେ ରହିବି । ଢେଙ୍କିମାଙ୍କ ଏକାଦଶାହ ଉପଲକ୍ଷେ ବାପା ଗାଁରେ ବଡ଼ ଧରଣର ଭୋଜି କରିବେ । ଆମ ଗାଁ ସହିତ ପାଖଆଖ ଗାଁର



Digitized by srujanika@gmail.com

ଲୋକମାନେ ଆମ ଭୋଜିକୁ ଆସିଥିବେ । ସମସ୍ତେ ଭୋଜି ଖାଇସାରିବା ପରେ ବାପାଙ୍କୁ ଆଶ୍ୱାସନା ଦେଇ ଫେରୁଥିବେ । ସମସ୍ତେ ବି ଭୋଜି ଭଲ ହୋଇଛି ବୋଲି କହି ବାପାଙ୍କୁ ଅଧିକ ପ୍ରଶଂସା କରୁଥିବେ । ବାପା ତାଙ୍କ ମା'ଙ୍କ ପାଇଁ ଏତକ କରିଥିବାରୁ ନିଜକୁ ଅଧିକ ସୁଖୀ ମଣୁଥିବେ ।

ମୁଁ ବେଶି ଦିନ ଗାଁରେ ରହିଯିବାରୁ ବାପା କହିବେ ତୁ କଲେଜ ଯା । ଆଉ ବେଶି ଦିନ ଏଠାରେ ରହନା । ତେଣେ ପାଠ ପଢା ମାରା ହେବ । ବୋଉ କିନ୍ତୁ ଛାଡିବାକୁ ଚାହୁଁ ନ ଥିବ । ତେଢିମାର ସୁଧବାଦ କାମ ପରେ ମୁଁ କଲେଜକୁ ଫେରି ଆସିବି । ମୋର ସେଇ କେଇ ଦିନ ଭାରି ମନ ଦୁଃଖ ହେବ । ବାପାଙ୍କ ଗମ୍ଭୀର ଚେହେରା ଓ ବୋଉର କରୁଣ ଆଖି ମୋର ଖାଲି ମନ ପଡିଯାଉଥିବ । ଗାଁ କଥା ମନ ପଡିବାରୁ ଗାଁକୁ ଫେରିଯିବାକୁ ଇଛା ହେଉଥିବ । କିନ୍ତୁ ତା ପରେ ସ୍ୱପ୍ନାକୁ ଦେଖିଦେଖି ଏହି ଘଟଣାକୁ କ୍ରମେ ଭୁଲିଯିବି । ସ୍ୱପ୍ନା ମୋର ଅନର୍ସ ସାଙ୍ଗ ଓ ପ୍ରେମିକା । ଟୁ-ଇନ୍-ୱାନ୍ ।

ସେହି ବର୍ଷ ପୁଣି ମିଲିର ପ୍ଲସ୍ ଟୁରେ ନାଁ ଲେଖାଯିବ । ଆମ ଦୁହିଁଙ୍କ କଲେଜ ପଢା ଖର୍ଚ୍ଚ ସବୁ ବାପାଙ୍କ ଉପରେ ବୋଝ ଭଳି ଲାଗୁଥିବ । ବାପା ତଥାପି ପରିଶ୍ରମ କରୁଥିବେ । ଭାଙ୍ଗି ପଡୁ ନଥିବେ । ତାଙ୍କ ସଂସାରକୁ ନେଇ ବେଶ୍ ଉତ୍ସାହ ଜଣା ପଡୁଥିବେ ।

ବାପା ଆମ ପାଇଁ ଏକ ଖୋଲା ଝର୍କା ଭଳି ଲାଗୁଥିବେ । ବର୍ଷା ଆସିଲେ ପ୍ରଥମେ ତାଙ୍କ ଦେହରେ ବାଜୁଥିବ ଓ ଖରା ହେଲେ ପ୍ରଥମେ ତାଙ୍କ ଉପରେ ପଡୁଥିବ । ତେବେ ବାପା ଆମକୁ ଅନେକ ସମୟରେ ଖୋଲା ଝର୍କା ଦେଇ ବାହାରକୁ ହାତ ବଢାଇବାକୁ କହୁଥିବେ ଏବଂ କହୁଥିବେ: ବର୍ଷା ଓ ଖରା କେମିତିକା ଏବେଠାରୁ ଜାଣି ରଖ । ବାପା ସତରେ ଗ୍ରେଟ୍ ଏବଂ ଆମକୁ ସୁରକ୍ଷା ଯୋଗାଉଥିବା ପୃଥିବୀର ସବୁଠୁ ସଫଳ ପୁରୁଷ ।

କିଛି କାମ ନଥିବା ବେଳେ ବାପା ଝୋଟରେ ବାଣି ବଳୁଥିବେ । ଲଙ୍ଗଳ ଦଉଡିଠାରୁ ଆରମ୍ଭ କରି ଶିକା, ତୋଡ, ହେଂସ, ମସିଣା ପାଇଁ ବାଣି ବଳୁଥିବେ । ବାପା ସୁନ୍ଦର ସୁନ୍ଦର ହେଂସ, ମସିଣା ବୁଣୁଥିବେ । ଶିକା, ତୋଡ ବୁଣିବାରେ ବାପା ଆମ ଅଞ୍ଚଳରେ ବେଶ୍ ନାଁ କମେଇଥିବେ । ଶିକା ଭଙ୍ଗା ଶିଖିବାକୁ ଗାଁର ବହୁ ଲୋକ ବାପାଙ୍କ ପାଖକୁ ଆସୁଥିବେ । ବାପା ସେମାନଙ୍କୁ ଶିକା ଭଙ୍ଗା ଶିଖାଉଥିବେ । ଯେଉଁମାନେ ନ ଶିଖି ପାରୁଥିବେ ସେମାନଙ୍କ ଉପରକୁ ବିରକ୍ତ ହେଉଥିବେ । ତେବେ ବାପା କେବେବି ହାତବାନ୍ଧି ବସୁ ନଥିବେ । କିଛି ନା କିଛି କାମରେ ସବୁବେଳେ ଲାଗିଥିବେ ।

ବାପାଙ୍କର ଏହି କର୍ମପ୍ରବଣ ଜୀବନ ବିଶେଷକରି ମୋତେ ବେଶି ପ୍ରଭାବିତ କରୁଥିବ । ମୁଁ ଅନେକ ସମୟରେ ସ୍ୱପ୍ନାକୁ ବାପାଙ୍କର ଏହି କର୍ତ୍ତବ୍ୟନିଷ୍ଠତା ସମ୍ପର୍କରେ କହୁଥିବି । ସ୍ୱପ୍ନା କିନ୍ତୁ କିଛି ବୁଝି ପାରୁ ନଥିବ । କାରଣ ତାର 'ବାପା' ବୋଲି ଗୋଟେ ଶବ୍ଦ ସମ୍ପର୍କରେ ବେଶି ଧାରଣା ନଥିବ ।



Digitized by srujanika@gmail.com

ତା ତ୍ୟାଡି ଥିବେ ସହରର ଜଣେ ଜଣାଶୁଣା ଇଂରାଜୀ ପ୍ରଫେସର ଏବଂ ସେ ଥିବ ତାଙ୍କର କେବଳ ମାତ୍ର ଝିଅ ଓ ସମ୍ବଳ ।

ବାପା ବିଲରେ ପ୍ରବଳ ବର୍ଷାରେ ହଳ କରୁଥିବେ । ଆମେ ପଖିଆ ତଳେ ଧାନବିଲ ହିଡ ଉପରେ ଠିଆ ହୋଇଥିବୁ । ସେତେବେଳେ ଆମର ସ୍କୁଲ୍ ଛୁଟି ଥିବ । ଆମେ ବିଲରେ ହଳ ହେଉଥିବା ସମୟରେ ମାଛ ଓ କଙ୍କଡା ଧରୁଥିବୁ । ବାପା ମଧ୍ୟ ଧରିକି ଆମକୁ ଦେଉଥିବେ । ଟୁକୁ ଓ ମିଲି ମଧ୍ୟ ବିଲକୁ ଯାଇଥିବେ । ସେ ଦିଇଟା କୋଉ କାମକୁ ନଥିବେ । ଗୋଟା ହେଲେ ମାଛ ଧରି ପାରୁ ନଥିବେ । ଖାଲି ହେଇ ମାଛ, ହେଇ କଙ୍କଡା ଚିଲୋଉଥିବେ । ହେଇ ବାପା ଗୋଡ ପାଖରେ, ହେଇ ବଳଦ ପଛପଟେ, ସେ ଦୁଇଟା ଖାଲି ପାଟି କରି ଭେଡା ଫଟୋଉଥିବେ । କେବଳ ଆମର ମାଛ ଧରା ପ୍ରକ୍ରିୟାକୁ ଖାଲି ଡିଷ୍ଟର୍ବ କରୁଥିବେ ଏବଂ ଖୁସିରେ ନାଚୁଥିବେ ।

ଏହି ସମୟରେ ବୋଉ ବାପାଙ୍କ ପାଇଁ ବିଲକୁ ଭାତ ନେଇକି ଯାଉଥିବ । ବାପା ହଳ ବନ୍ଦ୍ କରି ବନ୍ଧ ଉପରକୁ ଆସୁଥିବେ । ନଈରେ ଧୋଇଧାଇ ହୋଇ ଖାଇବା ପାଖକୁ ଯାଉଥିବେ । ବାପା ଭାତ ପାଖରେ ବସିବେ ଓ ଆମମାନଙ୍କୁ ଖାଇବାକୁ ଡାକୁଥିବେ । ସତରେ ବିଲରେ ଖାଇବାଟା ଖୁବ୍ ମଜା ଲାଗୁଥିବ । ଆଜି ପର୍ଯ୍ୟନ୍ତ ମୁଁ ଏହି ଘଟଣାକୁ ଭୁଲି ପାରୁ ନଥିବି । ଯଦିଓ ଅନେକ ସମୟରେ ସ୍ୱପ୍ନା ଓ ମୁଁ ଶୀତତାପ ନିୟନ୍ତ୍ରିତ ରେଷ୍ଟୁରାଣ୍ଟରେ ସାଙ୍ଗ ହୋଇ ଖାଇଥିବୁ ତେବେ ବିଲରେ ଖାଇବା ମଜା ଭଳି ତାହା ନଥିବ । କାରଣ ରେଷ୍ଟୁରାଣ୍ଟରେ ବାପା ନଥିବେ ଏବଂ ନଥିବ ତାଙ୍କର ଆଦରଭରା ଉତ୍ସର୍ଗୀକୃତତା ।

ବାପା କେମିତି କୂଳ ବିଲରେ ପାଣି ମଡାଇଲା ବେଳେ ଭୂତକୁ ଦେଖିଥିବେ, ସେକଥା ଆମକୁ ସନ୍ଧ୍ୟାବେଳେ ଦାଣ୍ଡ ପିଣ୍ଡାରେ ବସି କହୁଥିବେ । ବର୍ଷା ଦିନ ଝିପିରିଝିପିରି ମେଘ ପକାଉଥିବ । ଗୋବିନ୍ଦାଙ୍କ ଘର ଚାଳ ଛପର ଦେଇ ଧୂଆଁ ବାହାରୁଥିବ । ମନ୍ଦିରରେ ଘଣ୍ଟ ବାଜୁଥିବ । ଆମେ ସମସ୍ତେ ହାତ ଟେକି ଠାକୁରଙ୍କୁ ନମସ୍କାର କରୁଥିବୁ । ଆମ ସହିତ ବାପା ବି ନମସ୍କାର କରୁଥିବେ । ପିଣ୍ଡାରେ ଅର୍ଜୁନା ବୁଢା ଓ ଗୋପୀ ବୁଢା ବସିଥିବେ । ସେମାନେ ମଧ୍ୟ ଅନେକ ଡାଆଣୀ, ଭୂତ ଗପ କହୁଥିବେ । ଆମେ ଡରିକି ବାପାଙ୍କ ପାଖକୁ ଲାଗି ବସୁଥିବୁ । ଭୂତ କେମିତି ତାଳଗଛ ହୋଇ ଚାଲେ ଏବଂ ଚିରୁଗୁଣୀ କେମିତି କଇଁଥ ଗଛ ମୂଳେ ନିଆଁ ଜାଳି ତା ପିଲାକୁ ଶେକି ଦେଉଥିବ ବାପା ସେ ସମ୍ପର୍କରେ କହୁଥିବାବେଳେ ଆମେ ସମସ୍ତେ ଡରିକି ବାପାଙ୍କ ପାଖକୁ ଲାଗିକି ବସୁଥିବୁ ।

ବାପା କହୁଥିବେ ଯେଉଁମାନେ ମରି ଯାଆନ୍ତି ସେମାନେ ଭୂତ, ଡଆଣୀ ହୋଇକି ସମସ୍ତଙ୍କୁ ଡରାନ୍ତି । କିନ୍ତୁ ମରିଗଲା ପରେ ସବୁ ଲୋକ ଡରାନ୍ତି ନାହିଁ । କେତେ ଲୋକଙ୍କ ପ୍ରକୃତି ଖରାପ ହୋଇଥିବାରୁ ସେମାନେ ଅନ୍ୟମାନଙ୍କୁ ଡରାନ୍ତି ।...



Digitized by srujanika@gmail.com

.... ଏବେ ବାପାଙ୍କ କଥା ମନେ ପଡିଲେ ଆଖିରୁ ଲୁହ ବୋହିଆସେ । ସବୁ ଲୋକ ଭୂତ ହୋଇ ଡରାନ୍ତି ନାହିଁ। ସତରେ ବାପା ମରିଗଲା ପରେ ଆମକୁ କେବେ ବି ଦେଖା ଦେଇ ନାହାନ୍ତି କି ଗାଁରେ କାହାକୁ ବି ଡରାଇ ନାହାନ୍ତି ।

ବାପା ସତରେ ମହାନ୍ । ଦି ଗ୍ରେଟ୍ ।

ସେଦିନ ବାପାଙ୍କୁ ମଶାଣୀ ନିଆଗଲା । ମୁଁ ବାପାଙ୍କୁ କାନ୍ଧରେ ନେଲି । ବାପାଙ୍କ ମୁହଁରେ ନିଆଁ ଦେଲି । ବାପା ଚାଲିଗଲେ । ମଶାଣୀରେ ବାପାଙ୍କୁ ମୋଡିମାଡି ତାଙ୍କ ହାତଗୋଡ ଭାଙ୍ଗି ଚୁନା କରିଦେଲେ ଏବଂ ସେହି କୋକେଇ ଭିତରେ ରଖି ନିଆଁ ଲଗାଇଦେଲେ । ଓଃ, କି ଯନ୍ତ୍ରଣା । କଲିଜା ଥରି ଉଠୁଥାଏ । ମୁଣ୍ଡ ଝିମ୍‌ଝିମ୍ କରି ଯାଉଥାଏ । ମୁଁ ଲଥ୍ କରି ମଶାଣୀରେ ବସି ପଡୁଥିଲି । ବାପାଙ୍କୁ ଆଉ ପୁଣି ଫେରି ପାଇ ହବନି ବୋଲି ଚିନ୍ତାରେ ଛାତି ଫାଟି ପଡୁଥିଲା । ବାପାଙ୍କୁ ଯୁଇରେ ବସାଇ ନିଆଁ ଲଗାଇ ଦେଲାପରେ ବାପା ସମ୍ପୂର୍ଣ୍ଣ ଜଳି ପାଉଁଶ ହୋଇଯାଉଥିଲେ । ଏବଂ ଆମେ ସମସ୍ତେ ସେବେଠୁ ବାପାଙ୍କୁ ଭୁଲିବାକୁ ପ୍ରୟାସ କରୁଥିଲୁ ଏବଂ ଏକ ହସଖୁସିର ସୁନାର ସଂସାର ଆମର ହାତଛଡା ହୋଇଗଲା ଭାବି ଭାଙ୍ଗି ପଡୁଥିଲୁ ।

ଭଲ ଲୋକଟା ଥିଲା, ଚାଲିଗଲା ବୋଲି ଗାଁ ଲୋକେ କହୁଥିବେ । ବୋଉ ଗୁଗୁରୁଗୁ ହୋଇ କାନ୍ଦୁଥିବ । ତା କାନ୍ଦୁରା ମୁହଁ ଅତ୍ୟନ୍ତ କରୁଣକରୁଣ ଲାଗୁଥିବ । ମୁଁ ବୋଉକୁ ବୁଝାଇବାକୁ ଚେଷ୍ଟା କରୁଥିବି । କ୍ରମେ ମୁଁ ପରିବାରର ବାପା ହେବାକୁ ଆରମ୍ଭ କରୁଥିବି । ପ୍ରକୃତରେ ମୁଁ କ'ଣ ବାପାଙ୍କ ଆସନ ନେଇ ପାରୁଥିବି?

ବାପା ଆମମାନଙ୍କୁ ଅନାଥ କରି ଚାଲିଗଲେ । ବାପାଙ୍କୁ ନେଇ ଆମର ସମସ୍ତ ଅନୁଭୂତିର ଅନ୍ତ ଘଟୁଥିଲାବେଳେ ସ୍ମୃତି ବଡ ଯନ୍ତ୍ରଣା ଦାୟକ ଲାଗୁଥିଲା ।

କିନ୍ତୁ ବାପାଙ୍କ ସେହି କଥା ପଦକ ମୋର ସବୁବେଳେ ମନ ପଡୁଥିଲା । ସବୁ ଲୋକ ମରିଗଲା ପରେ ଭୂତପ୍ରେତ ହୋଇ ଡରାନ୍ତି ନାହିଁ । ବାପାଙ୍କ ଗମ୍ଭୀର ମୁହଁ ମୋ ଆଖି ଆଗରେ ନାଚି ଯାଉଥିଲା । ତାଙ୍କର ଶାନ୍ତ ଶୀତଳ ଚେହେରା ନିରବି ଯାଉଥିଲା । ବାପା ସତରେ ମହାନ୍ । ଗ୍ରେଟ୍ ।

□



Digitized by srujanika@gmail.com

# ସ୍ମୃତିର
# ଡ଼େଣାରେ ବସି





Digitized by srujanika@gmail.com

ମସିଣାରେ ପଡ଼ିଥିବା ସେଦିନ ଟୁନି ଅପାର ନିଶ୍ଚଳ ଦେହ ଆଜି ଖୁବ୍ ମନେ ପଡୁଛି । ତା ସାଥୀରେ ବି ମନେ ପଡୁଛି ପିଲାବେଳର ଗାଁ ଓ ପିଲାଦିନ ।

ଶୁଖି ଯାଇଥିବା ଘା'ରେ କାହାର ନଖ ବାଜି ଯାଉଛି । ବକଳା ଛାଡି ଯାଉଛି । କେବଳ ଯନ୍ତ୍ରଣାରେ ଛଟପଟ ହେବା ସାର ହେଉଛି ।

କେତେ ଗୋରୀ ଝିଅ ଟୁନି ଅପା, ଅଥଚ କଳାକାଠ ପଡିଯାଇଥିଲା ତା ଦେହ ସେଦିନ ସେଇ ମସିଣା ଉପରେ । ପାଟିରୁ ଗରଳ ବାହାରି ଶୁଖି ଯାଇଥିଲା । ମୁହଁରେ ମାଛି ଭଣଭଣ ହେଉଥିଲେ । ତାର ସେଇ ସବୁଜ ରଙ୍ଗର ଛିଟ ଶାଢିଟି ପାଣି କାଦୁଅରେ ଓଦାପଚରା ହୋଇ ଯାଇଥିଲା । ତଥାପି ବି ସେ ସୁନ୍ଦର ଲାଗୁଥିଲା ସେହି କାଦୁଅ ପଚରା ଶାଢିରେ । ମୃତ୍ୟୁ ଶଯ୍ୟାରେ । ନିରବ ଶବଟି ସାଥୀରେ ।

ଗାଁ ମାଇପିଙ୍କ ଭୁଟୁରୁଭାଟର ଏବେ ମୋ କାନରେ ଅତଡା ଖାଉଛି ।

ଖାଲି ଏତିକି ମନେ ଅଛି ସେଦିନ ମୁଁ ମୋଟେ କାନ୍ଦି ପାରି ନଥିଲି । ମୋ ଛାତି ପଥରଠାରୁ ଆହୁରି କଠିନ ହୋଇ ଯାଇଥିଲା । ଯଦିଓ ମୁଁ ତାର କୁନି ଭାଇ ତେବେ ମୁଁ ତାକୁ ମୋ ବୋଉ ଭଳି ଧରି ନେଇଥିଲି । ସେ ବି କୌଣସି ମା'ଠୁଁ କମ୍ ସ୍ନେହ ମୋତେ ଦେଇ ନଥିଲା! ପିଲାବେଳେ ମୁଁ ମୋ ବୋଉଠାରୁ ତା ପାଖରେ ବେଶି ସମୟ ରହୁଥିଲି । ତା କୋଳରେ ଶୋଉଥିଲି ଓ ତା ସାଙ୍ଗରେ ସ୍କୁଲକୁ ଯାଉଥିଲି ଓ ତା ସାଙ୍ଗରେ ଆମ୍ବ ବଗିଚାରେ ବୁଲୁଥିଲି ଓ ତା ସାଙ୍ଗରେ ପୋଖରୀକୁ ଗାଧୋଇ ଯାଉଥିଲି ଓ ତା ସାଙ୍ଗରେ ପଟ୍ଟାମୁଣ୍ଡାଇ ଯଜ୍ଞ ବି ଯାଉଥିଲି । କିନ୍ତୁ ମୁଁ ସେଦିନ ମୋଟେ କାନ୍ଦି ପାରି ନଥିଲି । ସେଦିନ କାନ୍ଦି ନଥିଲି ବୋଲି ତ ଆଜି ପର୍ଯ୍ୟନ୍ତ ସବୁ ଦିନ କାନ୍ଦୁଛି ।

ସେଦିନ ଟୁନି ଅପା ମରି ପଡିଥିବାବେଳେ ତା ବୋଉର ଛାତି ଫଟା କାନ୍ଦ ଏବେ ମୋ ପଞ୍ଜରାକୁ ଥରେଇ ଦେବାକୁ ସକ୍ଷମ ହେଉଛି । କାନ୍ଦି କାନ୍ଦି ଗୌରୀ ଖୁଡ଼ୀ (ଟୁନି ଅପାର ବୋଉ) ଘଣ୍ଟାକୁ ଘଣ୍ଟା ଛୋବ ଚାଲି ଯାଉଥିଲା । ଦୋକଟୀ କଡ଼ରେ ପଡ଼ିଥିବା ପଥର ଉପରେ ମୁଣ୍ଡ ଛେଚି ଦେଉଥିଲା । ମୁଣ୍ଡ ଫାଟି ରକ୍ତ ଝରୁଥିଲା । ଦାନ୍ତ ଢାବ ପଡି ଯାଉଥିଲା । କେହିକେହି ଗୁଆକାତିରେ ଢାବ ଫିଟାଉଥିଲେ ।

ଟୁନି ଅପାର ଅନ୍ୟ ସାଙ୍ଗମାନେ ସକେଇ ସକେଇ କାନ୍ଦୁଥିଲେ । କିଛି ମାଇପେ କନକନ ହେଉଥିଲେ । ପରିବେଶ କରୁଣ କରୁଣ ଲାଗୁଥିଲା ।



Digitized by srujanika@gmail.com

ଗୋଟେ ଭାରି ନିରବତା ଗଡୁଥିଲା ଅଗଣାରେ ପେଣ୍ଟୁ ଭଳି । ଆଉ ପୋଖରୀ ହୁଡାରେ ଡାନା ବାନ୍ଧୁଥିଲା କୋଳାହଳ । ଏବେ ମନ ପଡୁଛି । କେବଳ ଏତିକି ମନ ପଡୁଛି ସେମାନେ ବରୁଣ୍ଡୁ ଭାଇ ବରୁଣ୍ଡୁ ଭାଇ ଉଚ୍ଚାରଣ କରୁଥିବାର । ତେବେ ବରୁଣ୍ଡୁ ଭାଇ ସେଦିନଠୁ ଗାଁରୁ କୁଆଡକୁ ଚାଲି ଯାଇଥିଲା ଯେ ଆଜି ପର୍ଯ୍ୟନ୍ତ ଗାଁକୁ ଫେରିନି ।

ମରିଛି କି ବଞ୍ଚିଛି ସେ ସର୍ବନାଶିଆଟା କେଜାଣି?

ସବୁ ଏବେ ମନ ପଡୁଛି । କାନ୍ଦ ମାଡୁଛି ।

ଟୁନି ଅପାକୁ ସବୁ ଦିନ ପାଇଁ ହରେଇ ଦେଇଛି ଏବଂ ଆଉ ତାକୁ ପାଇ ହେବନି କି ଦେଖିହେବନି କି ତା ସହ ଆମ୍ବ ବଗିଚାରେ ବୁଲି ହେବନି କି ତା ସହ ସ୍କୁଲକୁ ଯାଇ ହେବନି କି ତା ସହ ପୋଖରୀରେ ଗାଧୋଇ ହେବନି କି ତା ସହ କୂଳକୁ କଣ୍ଟେଇ କୋଳି ତୋଳି ଯାଇ ହେବନି ଭାବି ଛାତିକୁ ପଥର କରିଦେବାକୁ ଉଚିତ୍ ମଣୁଛି । ସେ ବି ଆଉ ମୋତେ ଆକଟ କରି ପରିବନି କି ଡହ୍ଲି ପୋତା କି ଶୁଖୁଆ ରାଇ ଆଣି ପଖାଳ କଂସା ପାଖରେ ଥୋଇ ଦେବନି ଭାବିଲା ପରେ ମୋ ଛାତି ଫାଟି ଯାଉଛି । ଆଃ... ସେମିତି କାହିଁକି ହୁଏ କେଜାଣି?

ଗୋଟେ ଦୀର୍ଘଶ୍ୱାସ ମୋ ଛାତି ଦେଇ ଚାଲି ଯାଉଛି ।

ପୋତି ହୋଇ ପଡିଥିବା ନିରବତାକୁ ଉଖୁରେଇବାରେ ଲାଗିଛି ଆଜିର ସକାଳ ।

ଗୋଟେ ଛୁଞ୍ଚି ମୁନିଆ ସ୍ମୃତି ହୃଦୟକୁ ଫୁଟେଇ ଚାଲିଛି ବରାବର ।

ଟୁନି ଅପା ସହ ସାଙ୍ଗ ମୋର ପିଲାଟି ବେଳୁ । ଟୁନି ଅପାର ଅନ୍ୟ ଯେତେ ସାଙ୍ଗ ଥିଲେ ବି ମୋତେ ସବୁବେଳେ ତା ପାଖରେ ବାନ୍ଧି ରଖିଥାଏ ।

ଟୁନି ଅପା, ଭାଲୁକୁଣୀ ଓଷା, ରଢ ବୁଲା, ତାସ୍ ଖେଳ, କୂଳ ବିଲରୁ ମୋଟି ଶାଗ ଆଉ ବଥୁଆ ଶାଗ ତୋଳା, କଣ୍ଟେଇ କୋଳି, କିଆ ଫୁଲ, କାଇଁଚ ଫଳ, ସଂକ୍ରାନ୍ତିରେ ମହାଦେବ ମନ୍ଦିର ବୁଲା, ଖରା ଦିନେ ସକାଳ ଓଳି ସ୍କୁଲ, ବିକଳା ବୁଢା ଜାମୁକୋଳି ବି ଆଜି ମନ ପଡୁଛି ।

ସେତେବେଳେ ମୋତେ ପାଞ୍ଚ ବର୍ଷ । ପ୍ରଥମ ଶ୍ରେଣୀରେ ପଢୁଥିଲି । ଟୁନି ଅପାର ପଞ୍ଚମ ଶ୍ରେଣୀ । ଖରା ଦିନ ସକାଳ ଓଳି ସ୍କୁଲ । ବଡ଼ି ଭୋଅରୁ ଉଠି ଆଗେ ଟୁନି ଅପା ଚାଲି ଆସେ ଆମ ଘରକୁ । ମୋତେ ଶେଯରୁ ଉଠାଏ । ନିଦରୁ ଆଖି ମଳିମଳି ମୁଁ ଶେଯରୁ ଉଠେ । ଦେହରେ ଶୋରିଷ ତେଲ ମାରି ହୁଏ । ଘସି ପାଉଁଶ ଖଣ୍ଡେ ଧରି ଟୁନି ଅପା ଓ ମୁଁ ସାଙ୍ଗ ହୋଇ ଗାଁ ମୁଣ୍ଡ ପୋଖରୀକୁ ଗାଧୋଇବାକୁ ଯାଉ । ଟୁନି ଅପା କାଖରେ ଏକ କଳସୀ ଆଉ ତା ଜାମାପଟା ଗୋଛାଏ ଧରି ପୋଖରୀକୁ ଆସିଲା ବେଳେ ଭାରି ସୁନ୍ଦରୀ ଲାଗୁଥାଏ । ଟୁନି ଅପା କରଞ୍ଜ ଦାନ୍ତକାଠିରେ ଦାନ୍ତ ଘସେ । ସକାଳୁ ସକାଳୁ ଶୀତ ଲାଗୁଥାଏ । ମୁହଁରେ ତାର ପ୍ରିୟ ପଣ୍ଡ୍ସ ପାଉଡ଼ର ଆଉ ଫେୟାର ଆଣ୍ଡ ଲଭ୍‌ଲି କ୍ରିମ୍ ବୋଳି ହୁଏ । (ସେତେବେଳେ ଗାଁମାନଙ୍କରେ ପାଉଡ଼ର କହିଲେ ପଣ୍ଡ୍ସ ଓ ଆଉ



Digitized by srujanika@gmail.com

କ୍ରିମ୍ କହିଲେ ଫେୟାର ଆଣ୍ଡ ଲଭ୍‌ଲି ବୋଲି ଲୋକେ ଜାଣିଥିଲେ । ଏହି ଦୁଇଟି ଚିଜ ମୋ ପିଲାବେଳୁ ମୁଁ ଦେଖି ଆସୁଛି)

ଗାଧୋଇ ସାରି ଘରକୁ ଫେରି ଫଟାଫଟ୍ ବୋତାମ ଛିଣ୍ଡି ଯାଇଥିବା ପେଣ୍ଟ୍‌ଟାକୁ ଗଳେଇ ଦେଇ ଗଣ୍ଠି ଭିଡିଦିଏ । ଜାମା ପିନ୍ଧି ପଖାଳ ଭାତ ବେଲାଏ ଧରି ବସେ । ତାପରେ ବହିବସ୍ତାନୀ ଧରି ସ୍କୁଲକୁ ବାହାରି ପଡେ । ବେଳେବେଳେ ଟୁନି ଅପା, ମୁଁ ପଖାଳ ଖାଇଲାବେଳେ କାକୁଡି, ଲେଉଟିଆ ଶାଗ ଭଜା, ଡହ୍ଲି ପୋଡା, ଭେଣ୍ଡି ଭର୍ତ୍ତା, ବୋରେଇ ଶୁଖୁଆ ରାଇ, ଚୁନା ମାଛ ଭଜା କିମ୍ବା ପାଣି କଖାରୁ ପତ୍ର ପୋଡ଼ା ଆଦି ମଧ୍ୟରୁ ଯେକୌଣସି ଗୋଟିଏ କିମ୍ବା ଦୁଇଟି ଆଇଟମ୍ ଆଣି ଆମ ଘରେ ଦେଇଯାଏ । ଅନେକ ବେଳେ ମୁଁ ତାଙ୍କ ଘରେ ଖାଇଥାଏ । ଖାଇବା ଭିତରେ ଟୁନି ଅପା ଆସି ଆମ ଘରେ ହାଜର ହୋଇ ଯାଇଥିବ । ସେଉଟୁ ଆମେ ସ୍କୁଲକୁ ବାହାରି ପଡୁ । ତା ପରେ ଆମେ ଜୋଛନା ଅପାଙ୍କ ଘରକୁ ଯାଉ । ଆମ ଘରଠୁ ଦୁଇ ଖଞ୍ଜା ଛାଡି ଜୋଛନା ଅପାଙ୍କ ଘର । ଜୋଛନା ଅପାଙ୍କ ଘରୁ ପୁଉଣି ସାଗରିକା ଅପାଙ୍କ ଘରକୁ ଯାଉ । ସ୍କୁଲରେ ପହଞ୍ଚିଲାବେଳକୁ ଆମ ଦଳରେ ପ୍ରାୟ ଦଶବାର ଜଣ ଝିଅ ହୋଇ ଯାଇଥାନ୍ତି । କେବଳ ବଡ଼ବଡ଼ ଝିଅ ପଲଙ୍କ ଭିତରେ ମୁଁ ଛୋଟ ପିଲାଟେ ଥାଏ । ମୋ ସାଙ୍ଗରେ ସବୁ ଝିଅମାନେ ଲାଗନ୍ତି । ଥଟ୍ଟାମଜା କରନ୍ତି । ମୋ ପେଣ୍ଟ ଟାଣି ଦିଅନ୍ତି । ପେଣ୍ଟ ଖସି ପଡ଼ିଲେ କିରିକିରି ହୋଇ ହସନ୍ତି । ମୋ ନାକ ମୋଡି ଦିଅନ୍ତି । ଗାଲ ଚିପି ଦିଅନ୍ତି । ପିଲାଟି ବେଳେ ମୁଁ ଗୋଲଗାଲ୍ କୌତୁକିଆ ଥିବାରୁ ସେମାନଙ୍କ ପାଇଁ ମୁଁ ଗୋଟେ ଏଣ୍ଟରଟେନ୍‌ମେଣ୍ଟ ଆଇଟମ୍ ଥିଲି । ଏସବୁ ସେମାନେ କାହିଁକି କରନ୍ତି ମୁଁ ଜାଣି ପାରେନା । କିନ୍ତୁ ଏସବୁ ଟୁନି ଅପାର ଅଜାଣତରେ ହୁଏ । ଟୁନି ଅପା ଜାଣିଲେ ସେମାନଙ୍କ ଉପରେ ବିଗିଡେ ଓ ରାଗେ । ଟୁନି ଅପାର ମୋ ପାଇଁ ଯେମିତି ପ୍ରାଣ ଛାଡିଯାଏ ।

ସ୍କୁଲରେ ପହଞ୍ଚିଲା ପରେ କିନ୍ତୁ ଆମେ ଅଲଗା ହୋଇଯାଉ । ଟୁନି ଅପା ଆଉ ଜୋଛନା ଅପା ସ୍କୁଲରେ ପ୍ରାର୍ଥନା ବୋଲନ୍ତି । ହେଲେ ମୋତେ କାହିଁ ପ୍ରାର୍ଥନା ବଡ଼ ବୋର୍ ଲାଗେ । ପ୍ରାର୍ଥନା ଯେଉଁ ଦଶ ମିନିଟ୍ କି ପନ୍ଦର ମିନିଟ୍ ସେହି ସମୟ ହିଁ ମୋ ପାଇଁ ସବୁଠୁ ବେଶି ଯନ୍ତ୍ରଣାଦାୟକ । ଇଛା ନଥିଲେ ବି ଜବରଦସ୍ତ ଆଖି ବୁଜି ଆହେ ଦୟାମୟ ବିଶ୍ୱ ବିହାରୀ, ଘେନ ଦୟା ବହି ମୋର ଗୁହାରୀ ପାଟି ପାକୁପାକୁ କରିବାକୁ ପଡେ । ତେଣେ ମାଷ୍ଟର ପ୍ରାର୍ଥନା ସଭା ମଝିରେ ବୁଲି ବୁଲି କିଏ ଆଖି ବୁଜିଛି କି ନାହିଁ କିଏ ପ୍ରାର୍ଥନା ବୋଲୁଛି କି ନାହିଁ ନିୟମିତ ଭାବେ ଚେକ୍ କରୁଥିବେ । ବଡ଼ ଯନ୍ତ୍ରଣାଦାୟକ ସମୟ । ମୁଁ କିନ୍ତୁ ଟିକେ ଟିକେ ଆଖି ଖୋଲି ଏହା ଦେଖୁଥିବି । ଯେମିତି ମାଷ୍ଟର ଆମ ଆଡ଼କୁ ଆସି ପହଞ୍ଚିପିବ ଚଟ୍ କିନା ଆଖି ବୁଜି ପକେଇବି ଓ ପାଟି ପାକୁପାକୁ କରିବି ।

ବଡ଼ ଅପାମାନେ ଉପର ଶ୍ରେଣୀରେ ପଢୁଥିବାରୁ ସେମାନେ ଅଲଗା ଘରେ ବସନ୍ତି । ଆମେ ଆଉ ଗୋଟେ ଘରେ ପାଠ ପଢୁ । ସେତେବେଳେ ଭାବେ ମୁଁ ଟୁନି ଅପା ପାଖରେ ବସି ପାଠ



Digitized by srujanika@gmail.com

ପଢନ୍ତିକି? ଟୁନି ଅପା ଆର ଘରେ ବସୁଥିବାରୁ ମୋତେ କାନ୍ଦ ଲାଗେ । ବେଳେବେଳେ ଟୁନି ଅପାକୁ ସେ ଚଷମା ଦିଆ ହେଡ୍ ମାଷ୍ଟରଟା ଛାଟିଆରେ ପିଟନ୍ତି । ସେତେବେଳେ ମୋତେ ଆହୁରି କାନ୍ଦ ଲାଗେ । ଭାରି ରାଗିଯାଏ । ମାଷ୍ଟର କଛା ଟାଣି ଦେବାକୁ ଇଛା ହୁଏ । ଏପଟେ ମୋ ଉପରେ ମାଡ଼ ହେଲେ ଟୁନି ଅପା ଅଥୟ ହୁଏ ।

କ୍ଲାସ୍ ସରିଯିବା ପରେ ଟୁନି ଅପା ଆମ ଶ୍ରେଣୀକୁ ଆସେ । ପଚାରି ବୁଝେ କାହିଁକି ସାର୍ ବାଡେଇଲେ ବୋଲି । ମୋ ପିଠି ବସିଥିବା ନୋଳାକୁ ଦେଖି ତା ଆଖିରୁ ଲୁହ ବାହାରି ପଡେ । ସେ କାନ୍ଦକାନ୍ଦ ହୋଇ ପୁଣି ତା ଶ୍ରେଣୀକୁ ଫେରିଯାଏ ।

ଖରାବେଳେ ଖେଳଛୁଟିରେ ଟୁନି ଅପା ହେରିକା କଣ୍ଟୁରି ଜେନା ତେନ୍ତୁଳି ବାଡିକୁ ଚାଲି ଯାଆନ୍ତି । ସେଠାରେ କଇଁଆ ଖଟା ଝୋଳ କରି ହାପୁଡନ୍ତି । ଉଃ.. ହୁଃ.. କି ରାଗ ଲୋ ବୋଉ ସେଇ କଇଁଆ ଝୋଳ । ଖାଲି ସୁ ସୁ ହୋଇ ହାପୁଡି ପକାନ୍ତି ସେହି ଝିଅ ପଲ ।

ଚାରିଟା ବାଜିଲେ ଆମେ ଘରକୁ ଫେରୁ । ସନ୍ଧ୍ୟାରେ ଟୁନି ଅପା, ମିଲି ଅପା, ସାଗରି ଅପା ସାଙ୍ଗ ହୋଇ କେନାଲ ବନ୍ଧକୁ ଝାଡ଼ା ଯାଆନ୍ତି । ମୁଁ ତାଙ୍କ ସାଙ୍ଗରେ ଯାଏ । ସେତେବେଳେ କିନ୍ତୁ ସେମାନେ ଭାରି ହସାହସି ହଅନ୍ତି । ଠରାଠରି ହଅନ୍ତି । ମୁଁ କିଛି ବୁଝି ପାରେନା ।

ସବୁ ଅପାମାନେ ଏକା ସାଙ୍ଗରେ କେନାଲ ବନ୍ଧରେ ଝାଡା ବସିବା ଦୃଶ୍ୟ ମୋତେ ଖୁବ୍ ଭଲ ଲାଗେ । ଲମ୍ବାଲମ୍ବା ଫ୍ରକ୍ କିମ୍ବା ନାଇଟ୍‌କୁ ଗୋଡ଼, ଆଣ୍ଠୁ ଆଉ ଅଣ୍ଟାର ଚର୍ତୁପାର୍ଶ୍ୱରେ ଘେରେଇ ଦେଇ ପାଦ ଓ ପାଦ ପାଖଆଖର ଘାସପୂର୍ଣ୍ଣ ଭୂମିକୁ କଭର୍ କରିଦେବା ପରେ ସେମାନଙ୍କ ଝାଡା ବସିବା ପ୍ରକ୍ରିୟା ତା ମଧ୍ୟରେ ହିଁ ଘଟିଥାଏ । ସତରେ ସେଇ ଦୃଶ୍ୟ ଅଜାଣତରେ ମୋ ମନରେ ଏବେ ମଧ୍ୟ ପ୍ରଭାବ ବିସ୍ତାର କରିଛି । ଏବେ ମଧ୍ୟ ଗାଁର ଝିଅମାନେ କେନାଲ ବନ୍ଧରେ ଝାଡା ବସିଥିବା ଦୃଶ୍ୟ ମୋତେ ଭଲ ଲାଗେ (ଅବଶ୍ୟ ଜଣେ ପୁରୁଷ ପାଇଁ ଏହା ଏକ ଆପତ୍ତିଜନକ ଦୃଶ୍ୟ) ।

ତା ପରେ ଗାଁ ଦାଣ୍ଡରେ ଆରମ୍ଭ ହୋଇଯାଏ ବୋହୂ ଚୋରି ଖେଳ । ଜହ୍ନ ଆଲୁଅରେ ଗାଁ ଦାଣ୍ଡରେ ଗା-ବାଗୁଡି, ରୁମାଲ ଚୋରି ଖେଳ ଖୁବ୍ ଜମେ । ମୁଁ ତାଙ୍କ ସାଙ୍ଗରେ ଖେଳେ ।

ଛୁଆଟିବେଳୁ ମୁଁ ସବୁ ସମୟ ଝିଅମାନଙ୍କ ସହ କଟାଇଥିବାରୁ ବୋଧେ ମୋଠାରେ ଏବେ ବେଶି ମାତ୍ରାରେ ଝିଅ ସୁଲଭ ଗୁଣ ଦେଖାଯାଇଥାଏ । ମୋର ଆଖି କୁଆଡେ ଗୋଟେ ଝିଅର ଆଖି ଭଳି ଆଉ ମୋର ଷ୍ଟାଇଲ୍ ମଧ୍ୟ ଝିଅଙ୍କ ଭଳି ବୋଲି ମୋ ପତ୍ନୀ ଲୀନା କେତେବାର କହିଛି । ତେବେ ଲୀନା ମୋର ଗୋଟା ବଢିଆ ପତ୍ନୀ । ସେଭଳିଆ ପତ୍ନୀ ପାଇଥିବାରୁ ଈଶ୍ୱରଙ୍କ ନିକଟରେ ଋଣୀ ।

ହାଇସ୍କୁଲରେ ପଢୁଥିବାବେଳେ ମଧ୍ୟ ଟୁନି ଅପା ମୋ ସାଙ୍ଗ ଛାଡି ନଥିଲା । ଟୁନି ଅପାର



Digitized by srujanika@gmail.com

ଯେତେବେଳେ ମେଟ୍ରିକ୍ ସେତେବେଳେ ମୋର ଷଷ୍ଠ ଶ୍ରେଣୀ । ଅର୍ଥାତ୍ ସେ ହାଇସ୍କୁଲ ପିଲା ଆଉ ମୁଁ ମାଇନର ସ୍କୁଲ ପିଲା ।

ରଜ ସମୟଟା ଆମ ପାଇଁ ସବୁଠୁ ଆନନ୍ଦର ସମୟ । ବିଶେଷ କରି ଟୁନି ଅପା ପାଇଁ । ମୋଟ ଉପରେ ସବୁ ଅପାଙ୍କ ପାଇଁ । କେବଳ ସବୁ ଅପାଙ୍କ ପାଇଁ ନୁହେଁ । ଏହା ତ ସବୁ ଝିଅଙ୍କ ପର୍ବ । ତେଣୁ ସବୁ ଝିଅଙ୍କ ପାଇଁ ।

ରଜରେ ଟୁନି ଅପା ଯୁଆଡେ ବୁଲିଯାଏ, ମୁଁ ତା ସାଙ୍ଗରେ ଯାଏ । ସେମାନେସବୁ ଦୋଳି ଖେଳନ୍ତି । ମୋତେ ଡ଼ର ଲାଗେ । ଦୋଳିରେ ବସିଲେ ମୋ ମୁଣ୍ଡ ବୁଲାଏ । ମିଲି ଅପା, ସାଗରିକା ଅପା ହେରିକା ମୋତେ ଦୋଳିରେ ବସାଇବାକୁ କହିଲେ ମଧ୍ୟ ଟୁନି ଅପା ମନା କରେ । ରଜରେ ଗାଁ ବୁଲୁ । ବିକଳା ବୁଢା ଜାମୁକୋଳି ଗଛରୁ ଜାମୁକୋଳି ଖାଉ । ବୁଢାଟା ଅନ୍ୟ କେହି ଟୋକାମାନଙ୍କୁ ତାର ବଗିଚାକୁ ପୂରେଇ ଦିଏନା । କିନ୍ତୁ ଏ ଝିଅ ପଲ ତା ବାଡିରେ ପଶିଲେ କିଛି ବି କହେନା । ସେହି ସୁଯୋଗରେ ମୁଁ ମଧ୍ୟ ବୁଢା ବାଡିରେ ପଶିବାର ସୁଯୋଗ ପାଏ । ତାପରେ ସେମାନେ ଇଛା ବୁଢୀ (ବିକଳା ବୁଢାର ଭାର୍ଯ୍ୟା) ଘରକୁ ଯାଆନ୍ତି । ଇଛା ବୁଢୀ ଚକୁଳି କରେ । ଏ ଝିଅପଲ ତା ଘରେ ପଶି ଖେଦି ଯାଆନ୍ତି । ବୁଢା ସେତେବେଳେ ବଗିଚାରେ କାମ କରୁଥାଏ । ବୁଢୀ ଥାଳିଏ ମୋଟାମୋଟା ଚକୁଳି ପିଠା କରି ଆଣି ଝିଅପଲଙ୍କୁ ଯାଚେ । ମୋର କିନ୍ତୁ ସେ ଚକୁଳି ପିଠାକୁ ଦେଖି ରାଗ ନାହି ଆତୁ ମାଡିଆସେ । ବୁଢୀଟା ଟିକେ ଅପରିଛନ୍ନିଆ । ତା ହାତ ପାଣି ଖାଇ ଯାଇଥିବାରୁ ଆଖିକୁ ଭଲ ରୁଚୁ ନଥାଏ । ତା ଛଡା ମୋଟା ଚକୁଳି ମୋତେ ଭଲ ଲାଗେ ନାହିଁ ।

ମୋ ବୋଉ କରୁଥିବା ସରୁ ଚକୁଳି ହିଁ ମୋର ସବୁଠୁ ପ୍ରିୟ । ମୋ ବୋଉ କରିଥିବା ଚକୁଳି ବ୍ୟତୀତ ଆଉ ଯେତେ ଖିରିପୁରୀ, ଅମୃତ ହେଲେ ବି ମୋର ଜହର । ତେବେ ଇଛା ବୁଢୀଟି ଖୁବ୍ ସ୍ନେହୀ । ପିଲାମାନଙ୍କୁ ଆଦର କରେ । ସେମାନେ ବାଞ୍ଝ ହୋଇଥିବାରୁ ସେମାନଙ୍କୁ ଅନ୍ୟ ଲୋକମାନେ ଭଲ ଆଖିରେ ଦେଖି ପାରନ୍ତି ନାହିଁ । ଏଥିପାଇଁ ବୋଧେ ଇଛା ବୁଢୀ ଅନେକ ସମୟରେ ପିଣ୍ଡାରେ ବସି କେବଳ ଆକାଶ ଆଡ଼କୁ ଅନେଇ କ'ଣ କ'ଣ ଭାବୁଥାଏ କି କ'ଣ?

ସେଠୁ ଏହି ଝିଅମାନେ ନୀଳକଣ୍ଠେଶ୍ୱର ମହାଦେବ ମନ୍ଦିରକୁ ଯାଆନ୍ତି । ସଂକ୍ରାନ୍ତି ଦିନ ନୀଳକଣ୍ଠେଶ୍ୱର ମନ୍ଦିରରେ ଭାରି ଭିଡ ହୁଏ । ଏ ଝିଅପଲଯାକ ଠାକୁର ଦର୍ଶନ ସାରି ରାଖାଲ ଦୋକାନରେ ଭିଡ ଜମାନ୍ତି । ରାଖାଲ ଭେରାଇଟ୍ ଷ୍ଟୋର୍ କହିଲେ ସବୁ ଝିଅମାନଙ୍କର ପ୍ରଥମ ପସନ୍ଦ । ବହୁ ଅପାମାନଙ୍କର ବହୁ ଫର୍ମାୟିସ୍ । ଦୁନିଆ ବାର୍ଗିନ୍ । କିଏ ନେଲ୍ ପଲିସ୍ କିଣିବ, କିଏ ଅଳତା କିଣିବ, କିଏ ଶଙ୍ଖା ଚୁଡି କିଣିବ, କିଏ ଭାଗିରଥୀ ଦାସ ଉପନ୍ୟାସ କିଣିବ, କିଏ କାନ୍ଦଣା ବହି କିଣିବ, କିଏ ଟିକିଲି କିଣିବ, କିଏ ଫେୟାର ଆଣ୍ଡ ଲଭ୍ଲି (ରାଖାଲ୍ ଦୋକାନରେ କେବଳ ଡୁପ୍ଲିକେଟ୍ ଫେୟାର୍ ଆଣ୍ଡ ଲଭ୍ଲି ଥାଏ) କିଣିବ, କିଏ ମୁଣ୍ଡ ବନ୍ଧା ରିବନ୍ କିଣିବ, କିଏ ଟ୍ୟାସିଲ୍ କିଣିବ, କିଏ ବ୍ରା



Digitized by srujanika@gmail.com

କିଣିବ (ହାଇସ୍କୁଲ ବେଳୁ କିଛି ଝିଅ ବ୍ରା ପିନ୍ଧା ଆରମ୍ଭ କରିଦେଇଥିବା ମୋର ସ୍ପଷ୍ଟ ମନେ ଅଛି, ମିଲି ଅପା ଯେବେ ପତଳା ନେଳି ରଙ୍ଗର ଶାଲଓ୍ୱାର ପିନ୍ଧେ ସେତେବେଳେ ତା ପିଠି ପଛରୁ ଧଳା ରଙ୍ଗର ବ୍ରା ସ୍ପଷ୍ଟ ଦେଖାଯାଉଥାଏ, ଅବଶ୍ୟ ଟୁନି ଅପା ବ୍ରା ବଦଳରେ ଟେପ୍ ପିନ୍ଧେ । ଏମିତି ଏମିତି କେତେ କ'ଣ କିଣାଯିବ ରାଖାଲ ଦୋକାନରୁ ।

ଟୁନି ଅପା ଜଗନ୍ନାଥଙ୍କ ବନ୍ଧେଇ ଫଟୋ କିଣିବ ଏବଂ ଜଳଖିଆ ଦୋକାନରୁ ଜିଲାପି କିଣିବ । ବାସ୍ । ଏ ହେଲା ଟୁନି ଅପାର କିଣା ।

ଶୀତ ଦିନିଆ ଗାଁ ମୋତେ ଭାରି ଭଲ ଲାଗେ । ମାଘ ମାସ ଜାଡ଼ ବାଘ ପରି । କତରା ତଳେ ଘୋଡିଘାଡି ଶୋଇଲା ବେଳେ କି ମଜା! ଏତେ ସକାଳୁ କମ୍ବଳ ଭିତରୁ ଉଠିବାକୁ ଇଛା ହେଉ ନଥିବ । ତେଣେ ଟୁକୁନା, ମିଲି, ମାମା ରାମ ଭାଇନାଙ୍କ ପିଣ୍ଡାରେ ଖରା ପୁଆଁଇବାକୁ ସେମାନଙ୍କ ସ୍ଥାନ ଅଧିଗ୍ରହଣ କରି ସାରିଥିବେ । ମୁଁ ଉଠି ଗଲାବେଳକୁ ସେଠାରେ ଆଉ ମୋ ପାଇଁ ଜାଗା ନଥିବ ।

ଗାଁଠାରୁ ଅଧକୋଷ ଦୂରରେ ଗୋବରୀ ନଈ । ସବୁ ସ୍ମୃତି ଓ ପିଲାଦିନର ମୂକ ସାକ୍ଷୀ ।

ସେଇଠି ସେଇ ନଈ କୂଳରେ ଆମର ପରିବା ଫସଲ ହୁଏ । ଆମର କୋବି, ଆଳୁ, କାକୁଡି, ପୋଇ, କଖାରୁ, କଲରା, ସୋରିଷ, କୋଳଥ, ମାଣ୍ଡିଆ, ରାଶି, ଚିନାବାଦାମ ଆଦି ଫସଲ ସେଇ କୂଳ ବିଲରେ ହୋଇଥାଏ । ଆମେସବୁ କୂଳକୁ ବୁଲିଯାଉ । ଟୁନି ଅପାଙ୍କର ବି କୂଳରେ ପରିବା ଚାଷ ହୋଇଥାଏ । ବିଶେଷ କରି ଶୀତ ଦିନିଆ ସୋରିଷ କିଆରିର ଦୃଶ୍ୟ ଏବେ ବି ଜଳଜଳ ଦିଶିଯାଉଛି । ହଳଦି ଗୁରୁଗୁରୁ ସୋରିଷ ଫୁଲ; ଆହାଃ, ମନ କ'ଣ ହୋଇଯାଉଛି ।

ସୋରିଷ କିଆରିରେ ଟୁନି ଅପା ଠିଆ ହେଲେ ଗୋଟେ ଫିଲ୍ମ ହିରୋଇନ୍ ଭଳି ଲାଗେ ।

କୂଳରେ ବୁଲୁବୁଲୁ କଣ୍ଟେଇ କୋଳି ତୋଳୁ । ସଲର କୋଳି ତୋଳୁ । ମୋଟି ଶାଗ ତୋଳୁ । ମୋଟି ଶାଗରେ ଶୁଖୁଆ ପକେଇ ବୋଉ ଚୋପ୍ତ ଶାଗ ତିଆରି କରେ । ଗିଲ ସଂଗ୍ରହ କରୁ । କାଇଁଚ ଫଳ ସଂଗ୍ରହ କରୁ । କାଇଁଚ ଫଳକୁ ଟୁନି ଅପା ଭାରି ଭଲ ପାଏ । ନାଲି ରଙ୍ଗର କୁନି ଫଳଟିଏ, ମୁଣ୍ଡରେ କଳା ରଙ୍ଗର ଏକ ଟିପା । ମାଣ୍ଡିଆ ନଡା ଛିଣ୍ଡାଉ । ମଣ୍ଡିଆ ନଡା ଭାରି ମିଠା ଲାଗେ । କିଆ ଫୁଲ ଆଣୁ । କିଆ ଫୁଲରେ ଆଇମା ଖଇର ବତୁରାଏ । କୁଆଡେ କିଆ ଫୁଲରେ ଖଇର ବତୁରାଇଲେ ତାର ଗୋଟା ଅଲଗା ଟେଷ୍ଟ ଆସିଥାଏ । ଆମେ କିଆ ଫୁଲ ଆଣିଲେ ଆଇମା ସବୁଠୁ ଭାରି ଖୁସି ହୋଇଥାଏ । ଗାଁର ଅନ୍ୟ ବାଳୁଙ୍ଗା ଛୁଆମାନେ ଶୁଖିଲା କିଆବୁଦାରେ ନିଆଁ ଲଗାଇ ଦିଅନ୍ତି । କିଆ ବୁଦା ହୁତୁହୁତୁ ହୋଇ ଜଳେ । ସେମାନେ ଭାରି ମଜା ନିଅନ୍ତି । ମୋର ଭାରି ରାଗ ହୁଏ । ସୁନ୍ଦର ସୁନ୍ଦର କିଆ ବୁଦା, ଜଙ୍ଗଲକୁ ସେମାନେ ଜାଳି ଦିଅନ୍ତି । ସେଥିରେ କଣ୍ଟେଇ କୋଳି ଗଛ ଆଉ କାଇଁଚ ଗଛ ବି ଜଳିଯାଏ ।



Digitized by srujanika@gmail.com

କଣ୍ଢେଇ କୋଳି ଗଛ ଜଳିଗଲେ ମୋର ମନ ଦୁଃଖ ହୁଏ ଆଉ କାଇଁଚ ଗଛ ଜଳିଗଲେ ଟୁନି ଅପାର ମନ ଦୁଃଖ ହୁଏ ।

ଗାଁରେ ଦୁର୍ଗା ପୂଜା ସରିଗଲେ ଆସିଯାଏ କୁଆଁର ପୂନେଇଁ । କୁଆଁର ପୂନେଇଁର ସଫା ଜହ୍ନ ରାତି ତଳେ ଗାଁ ଦାଣ୍ଡ ଦୁଲୁକୁଥାଏ । ଟୁନି ଅପା ହେରିକା ଘରଘର ବୁଲି କୁଆଁର ପୂନେଇଁ ଭିକ୍ଷା ମାଗନ୍ତି । ଏକ କାଠ ପଟାରେ ଗୋବର ଦୁଇ ମେଦାରେ ଦୁଇଟି ଗୁଳା କରି ସେଥିରେ ଫୁଲ, ଚନ୍ଦନ, ଧୂପକାଠି ଖୋସି ଠାକୁର କରନ୍ତି । ଦୀପଟିଏ ବି ଜଳୁଥାଏ ଠାକୁରଙ୍କ ଆସ୍ଥାନରେ । କେତେକ ଦୁଷ୍ଟ ଟୋକାମାନେ ଟୁନି ଅପାଙ୍କ ଠାକୁର ଦୀପକୁ ଫୁଙ୍କି ଲିଭେଇ ଦିଅନ୍ତି । ମୋର ଭାରି ରାଗ ହୁଏ । ସେମାନେ ପାଳଭୂତ କରି ପଇସା ମାଗନ୍ତି । ପାଳଭୂତମାନେ ଟୁନି ଅପା ହେରିକାଙ୍କୁ ବେଶି ହଇରାଣ କରନ୍ତି । ନରିଆ ଭାଇ, ବାଆଡ଼ି ଭାଇ ପାଳଭୂତ ହୁଅନ୍ତି । ବାଆଡ଼ି ଭାଇ ପାଳଭୂତକୁ ମିଲି ଅପା ଭାରି ଆଗ୍ରହର ସହ ଦେଖେ । ସେତେବେଳେ କୁଆଡେ ବାଆଡ଼ି ଭାଇ ମିଲି ଅପାକୁ ଭଲ ପାଉଥିଲା । ବାଆଡ଼ି ଭାଇ ଖୁବ୍ ଭଲ ପିଲା । ହେଲେ ବି ମିଲି ଅପା ନାଁରେ ଗାଁ ଲୋକ ବହୁତ ଖରାପ କଥା କୁହାକୁହି ହୁଅନ୍ତି । ମିଲି ଅପା ଆଉ ବାଆଡ଼ି ଭାଇ କେତେଥର ଆମ୍ବ ବଗିଚାରେ ପାଖାପାଖି ବସି କଥା ହେଉଥିବାର ମୁଁ ଦେଖିଛି ।

ବର୍ଷା ଦିନେ ଗାଁରେ ଭାରି ମଜା ହୁଏ । ସ୍କୁଲ ଘର ଆଡ୍‌ବେଷ୍ଟସ ଛାତ କଣା ହୋଇଥିବାରୁ ପାଣି ଗଳେ । ସେଥିପାଇଁ ବର୍ଷା ଦିନେ ଆମ ସ୍କୁଲ ଛୁଟି ରହେ ।

ସ୍କୁଲ୍ ବନ୍ଦ ହେଲେ ଆମର ମଜା । ଘର ଚାଳରୁ ବର୍ଷା ପାଣି ଗଡି ଅଗଣା ଭର୍ତ୍ତି ହୋଇଯାଉଥାଏ । ବୋଉ ରୋଷେଇ ଘରେ ରୋଷେଇ କରୁଥାଏ । ମେଘରେ ଘସି, କାଠ, କୁଟା, ଛଣ, କାଉଁରିଆ ଓଦା ହୋଇଯାଇଥିବାରୁ ଭଲ ଜଳେନା । ଚୁଲି କୋଥଳାଏ । ଧୂଆଁରେ ଘର ଭର୍ତ୍ତି ହୋଇଯାଏ । ଏମିତି ସମସ୍ତଙ୍କ ଘର ମଥାନରୁ ଧୂଆଁ ବାହାରେ । ୟାଡେ ଟୁପୁରୁ ଟୁପୁରୁ ବର୍ଷା ସାଙ୍ଗକୁ ଘର ମଥାନରୁ ଧୂଆଁ ବାହାରିବା ଦୃଶ୍ୟ ବାସ୍ତବରେ ଖୁବ୍ ମନ ମୁଗ୍ଧକର ଥାଏ । କି ସୁନ୍ଦର ଦୃଶ୍ୟ! ଏବେ ମନ ପଡିଲେ କାନ୍ଦ ମାଡୁଛି । କେହି ମୋର ପିଲା ଦିନକୁ ଫେରେଇ ଦିଅନ୍ତା କି?

ବୋଉ ଚୁଲିରେ କୋଳଥ ଭାଜେ । ଯେଉଁ ଦିନ କୋଳଥ ଡାଲି ହୁଏ ମୋର ସେଦିନ ଖିଆ ବନ୍ଦ ମାନେ ଓପାସ । କିନ୍ତୁ ବାପାଙ୍କୁ ଆଉ ଜେଜେଙ୍କୁ କୋଳଥ ଡାଲି ଭାରି ଭଲ ଲାଗେ । ଟୁନି ଅପାକୁ ମଧ୍ୟ କୋଳଥ ଡାଲି ଭଲ ଲାଗେ । କୋଳଥ ଡାଲିରେ ଟିକେ ଆମ୍ବୁଲ ପକେଇ ବୋଉ ଡାଲି କରିଦେଲେ ବାସ୍ନା ଚାରି ଖଞ୍ଜା ମହକିଯାଏ । ସେତେବେଳେ ଜେଜେଙ୍କର ଖୁସି କିଏ ଦେଖିବ? ଜେଜେ ସନ୍ଧ୍ୟାରେ ପିଣ୍ଡାରେ ବସି ମୂଳିଆ ବୁଢା, ଗୋପି ବୁଢା, ବେନୁଆ ବୁଢାକୁ ମୋ ବୋଉ ହାତ ରନ୍ଧାର ତାରିଫ୍ କରନ୍ତି । 'ଖଟୁଆ ଝିଅ ହାତ କି ହାତ ଖଣ୍ଡେ, ଯାହା ରାନ୍ଧି ଦେଲେ ଅମୃତ'- ଜେଜେଙ୍କର ଏହି ପଦେ କଥାରେ ବୋଉ କୃତ୍ୟକୃତ୍ୟ ହୋଇଯାଏ । ସେଦିନ ସନ୍ଧ୍ୟାରେ ବୋଉ



Digitized by srujanika@gmail.com

ଢେଢେଙ୍କୁ ଭଲ ଭାବେ ଘସାମୋଡା କରିବ ଓ ଢେଢେଙ୍କୁ ବଳେଇକୁଳେଇ ଭାତ, ଡାଲି, ବାଇଗଣ ଭର୍ତ୍ତା ଖୁଆଇବ ।

ମୋ ବୋଉକୁ ଆମ ଘରେ ସମସ୍ତେ ଭଲ ପାଆନ୍ତି । ସାନ ଖୁଡ଼ୀମାନେ ବୋଉକୁ ଭାରି ମାନନ୍ତି ଓ ଭକ୍ତି କରନ୍ତି । ବୋଉ ବି ସେମାନଙ୍କୁ ସାନ ଯାଆ ପରିବର୍ତ୍ତେ ନିଜ ସାନ ଭଉଣୀ ଭଳି ଆଦର କରେ ।

ବର୍ଷାରେ କିନ୍ତୁ ଆମେ ଭାରି ମଜା କରୁ । ଟୁନି ଅପା, ମିଲି ଅପା, ଦୁଲିଆ ଆଉ ମୁଁ ସମସ୍ତେ ବାଡି ପଛ ପିଣ୍ଡାରେ ଲୁଡୁ ଖେଳୁ ଓ ତାସ୍ ଖେଳୁ । ଆମକୁ ସେମିତି କିଛି ତାସ୍ ଖେଳ ଆସେନି । ଖାଲି ବଡଛୋଟ ଖେଳୁ । ମାନେ ଯାହାର ଟିକା ବଡ ହାତ ତାହାର । ଦୁଲିଆ ଭାରି ଗୋଳେଇ । ସେ ବାଛି ବାଛି ଟିକା, ତେର, ବାର କେମିତି କୋଉ ଛଟକରେ ନେଇଯିବ କେହି ବି ତାର ଟେର୍ ପାଇବେ ନାହିଁ । କେହି ନଥିଲେ ଟୁନି ଅପା ଓ ମୁଁ ଦୁହେଁ ହତାଗାଣ୍ଡି କିମ୍ବା ସାପ ସିଡ଼ି ଖେଳୁ । ଏହି ଖେଳରେ ମାତ୍ର ଦୁଇ ଜଣ ହେଲେ ହୋଇଯାଏ । ସବୁବେଳେ ଖେଳିଲେ ବାପା ଟିକେ ବିରକ୍ତ ହୁଅନ୍ତି, କିନ୍ତୁ ଆମେ ତାଙ୍କ କଥା ମାନୁନା । ଖେଳୁ । ବୋଉ କହେ, ଛୁଆମାନେ ତାଙ୍କର ଖେଳିବା ବୟସ, ସେମାନେ ଖେଳନ୍ତୁ ।

ବାପା ମଠ ଆଡେ ଚାଲି ଯାଆନ୍ତି । ମଠରେ ଆମ ଭଳି ତାଙ୍କର ବି ଖଟି ଜମେ । ପଞ୍ଝାପଞ୍ଝା ତାସ୍ ପାଲି ମାତ ଚାଲିଥିବ ମଠରେ । ତାସ୍ ଖେଳରେ ଯଦୁଆ ବଡାପା' ଟିକେ ବଡ ପାଟିରେ ଚିଲ୍ଲାନ୍ତି । ବେଳେବେଳେ ମୁଁ ବାପାଙ୍କ ସାଙ୍ଗରେ ମଠକୁ ଯାଏ ଓ ତାଙ୍କ ଖେଳ ଦେଖେ । କେହି ଖେଳ ଭୁଲ୍ କଲେ ଯଦୁଆ ବଡାପା ଯେତେବେଳେ ବଡ ଜୋରରେ ପାଟି କରନ୍ତି, ମୁଁ ଡରିଯାଏ । ଛାତିରେ ଛେପ ପକାଏ । (ଏଇ ଛାତିରେ ଛେପ ପକାଇବା ପ୍ରକ୍ରିୟାଟା ମୁଁ ବୋଉ ପାଖରୁ ଶିଖିଛି । ମୁଁ ଯଦି କିଛି ଭୟଙ୍କର ଜିନିଷ ଦେଖି ଡ଼ରିଯାଏ କିମ୍ବା ଚମ୍‌କିପଡେ ସେତେବେଳେ ମୋ ବୋଉ ମୋ ଛାତିରେ ଛେପ ପକାଇ ଦିଏ ।) ଯଦୁଆ ବଡାପା ବହୁତ ବଡ଼ ପାଟି କରନ୍ତି । ଖେଳରେ ଗୋଟା କ'ଣ ଏତେ ବଡ଼ ପାଟି? ଭୁଲ୍ ହୋଇଗଲା, ହୋଇଗଲା ସେଉଟୁ କ'ଣ ଗଲା । ତା'ବୋଲି ଏତେ ବଡ଼ ପାଟି? ଆମେ ଖେଳିଲାବେଳେ କିନ୍ତୁ ରଗାରଗି ହଉନା ।

ଶ୍ରାବଣ ମାସରେ ଖୁଦୁରୁକୁଣୀ ଓଷା ଭାରି ଜମେ । ବାଆଜି ଭାଇ, ନରିଆ ଭାଇ ପାଖ ଗାଁରୁ ଭାଲୁକୁଣୀ ମୂର୍ତ୍ତି କିଣି ଆଣନ୍ତି । ମୁଁ ତାଙ୍କ ସାଙ୍ଗରେ ଯିବାକୁ ଅଇନି କରିବାରୁ ମୋତେ ସେମାନେ ନିଅନ୍ତି । ଟୁନି ଅପା ପ୍ରଥମ ପାଳି ରବିବାର ଦିନ ଓପାସ ରହେ । ବାଡି ପୋଖରୀ ହୁଡାରେ ଗୋବରରେ ଦୁଇଟି ଭାଲୁକ ମୂର୍ତ୍ତି କରନ୍ତି । ପ୍ରଥମ ପାଳି ଓଷାରେ କେବଳ ଅରୁଆ ଚାଉଳ ଭୋଗ ହୁଏ । ଚାଉଳ ଖାଇ ଠାକୁର ରାଉଳ ହୁଅନ୍ତି । ରାତିକି ଟୁନି ଅପାଙ୍କ ଠାକୁର ଘରେ ଗାଁଯାକର ଝିଅ ବୋହୂ ରୁଣ୍ଡ ହୁଅନ୍ତି ।



Digitized by srujanika@gmail.com

ବାଆଜି ଭାଇ ମିଳି ଅପା ସାଥୀରେ କ'ଣ ଏଣୁତେଣୁ ଗପେ । ଟୁନି ଅପା, କିଏ ଭୋଗ ଖାଇଲା ନ ଖାଇଲା ତାର ତଦାରଖ କରେ । ମୋତେ କିନ୍ତୁ ଅରୁଆ ଚାଉଳ ଭୋଗ ଭଲ ଲାଗେନି । ଟୁନି ଅପା ମୋ ଉପରେ ବିଗିଡେ । କହେ: ଛିଃ, ଭୋଗକୁ ଏମିତି କହନ୍ତି? ମୁଁ ଆଖି ବୁଜି ଅରୁଆ ଚାଉଳ ଭୋଗକୁ ପାଟିରେ ପୂରାଇ ଗିଳିଦିଏ । କିନ୍ତୁ ମଝି ପାଳିଗୁଡିକରେ ମୁଢି, ଚୂଡା, ଛେନା, ନଡ଼ିଆ ଭୋଗ ହୁଏ । ମୁଢି ଖାଇ ଠାକୁର ବୁଢୀ ହୁଅନ୍ତି । ଶେଷ ପାଳି ଦିନ ଖଇ ଭୋଗ ହୁଏ । ଖଇ ଖାଇ ଠାକୁର ନଈକୁ ଯାଆନ୍ତି ।

ଶେଷ ପାଳି ଦିନ କିନ୍ତୁ ସବୁ ଝିଅମାନେ ଗାଁରେ ଭିଡ଼ିଓ ଚଲାନ୍ତି । ଘଣକା ଦଶ ଟଙ୍କା ଲେଖା ଆଦାୟ କରି ଝିଅମାନେ ଭିଡ଼ିଓ ଚଳାଇବାକୁ ଭାରି ପସନ୍ଦ କରନ୍ତି । ମୋ ଜେଜେ ଏହି ଭିଡ଼ିଓକୁ କହନ୍ତି ବାକ୍ସ ଖେଳ । ଜେଜେଙ୍କୁ ଏହି ଭିଡ଼ିଓ (ବାକ୍ସ ଖେଳ) କିନ୍ତୁ ଭଲ ଲାଗେନି । ସେ କହନ୍ତି ଠିଆ ପାଲା କରିବାକୁ । ବିଜୟ ନଗରର ସେହି ନାଁକରା ଝିଅ ଗାହାଣ ଆଣିବାକୁ ଜେଜେଙ୍କର ଭାରି ଇଚ୍ଛା ଥାଏ । କିନ୍ତୁ ଝିଅମାନେ ଭିଡ଼ିଓ ଚଲାନ୍ତି । ଏସବୁ କାମରେ ଝିଅମାନଙ୍କୁ ବାଆଜି ଭାଇ, ନରିଆ ଭାଇ ସାହାଯ୍ୟ କରନ୍ତି । ଅଳାଇଲ ଗାଁରୁ ଭିଡ଼ିଓ ଆସେ । ପୁରୁଣା ଓଡ଼ିଆ ଫିଲ୍ମସବୁ ଚାଲେ । ବେଳେବେଳେ ବାଆଜି ଭାଇ ନୂଆ ହିନ୍ଦୀ ଫିଲ୍ମ ଲଗାଇ ଦିଅନ୍ତି । ମାଇପିମାନେ ମନା କରନ୍ତି । ସବୁ ଝିଅମାନେ କହନ୍ତି ଆମେ ଓଡ଼ିଆ ଫିଲ୍ମ ଦେଖିବୁ । ସେୟା ହୁଏ । ଝିଅଙ୍କ କଥା ରହେ । ଓଡ଼ିଆ ଫିଲ୍ମ ଚାଲେ । କାରଣ ଝିଅମାନେ ହିଁ ଏହାର ଆୟୋଜକ ଥାଆନ୍ତି ।

ଅମଡ଼ାବାଟ, ମଲା ଜନ୍ମ, ଶ୍ରୀଜଗନ୍ନାଥ, ତୁଣ୍ଡବାଇଦ, ଜଗା ହାତରେ ପଘା, ଦଇବ ଦଉଡି, ସ୍ୱପ୍ନ ସାଗର, ବାଜେ ବଇଁଶୀ ନାଚେ ଘୁଙ୍ଗୁର, ଗପ ହେଲେ ବି ସତ ।

ଭାଲୁକୁଣୀ ବିସର୍ଜନ ବେଳେ ସବୁଠୁ ବେଶି ମଜା ହୁଏ । ଠାକୁରସବୁଙ୍କୁ ପୋଖରୀରେ ବୁଡାଇ ଦେବା ପରେ ଆମେସବୁ ବୁଡିକି ପୁଣି ସେହି ଭାଲୁକୁଣୀ ମୂର୍ତ୍ତିମାନଙ୍କୁ ଅତଳ ଜଳରୁ ଉଦ୍ଧାର କରି ଆଣୁ । କାହାର ହାତ ଭାଙ୍ଗି ଯାଇଥିବ ତ କାହାର ମୁକୁଟ ଖସି ପଡିଥିବ । ତେବେ ସେମାନଙ୍କୁ ଆଣି ଆମେ ଘରେ ସାଇତି ରଖି ବେଶ୍ ଆନନ୍ଦିତ ହେଉ ।

..... ଆଉ ଅଳ୍ପ ଦିନ ଥାଏ ମେଟ୍ରିକ୍ ପରୀକ୍ଷା । ଟୁନି ଅପା ବିଷ ପିଇଦେଲା । ସେଦିନ ଗାଁରେ ଛୁଆଠାରୁ ବଡ଼ ପର୍ଯ୍ୟନ୍ତ ସମସ୍ତେ କାନ୍ଦିଥିଲେ । ମୁଁ କିଛି କିନ୍ତୁ ବୁଝି ପାରି ନଥିଲି । କିନ୍ତୁ ଆଜି ସବୁ ଜାଣି ପାରିଛି । ବରୁଡୁ ଭାଇଙ୍କୁ ମାରି ଦେବାକୁ ଇଚ୍ଛା ହେଉଛି । ତା ଛାତିରେ ଛୁରୀ ଭୁଶି ଦେବାକୁ ଇଚ୍ଛା ହେଉଛି । ଭୁଜାଲିରେ ହାଣି ତାକୁ କତଲ କରି ଦେବାକୁ ଇଚ୍ଛା ହଉଛି । ତାକୁ ମର୍ଡର କରି ଜେଲ ଯିବାକୁ ଇଚ୍ଛା ହଉଛି । ଦୁର୍ଭାଗ୍ୟ, ସେହିଦିନୁ ବରୁଡୁ ଭାଇ କୁଆଡେ ଚାଲି ଯାଇଛି ଯେ ତାର ପତ୍ତା ନାହିଁ । ତା ସହିତ ବି ଟୁନି ଅପା ଚାଲିଯାଇଛି । କେବଳ ଚାଲି ପାଇନି ସେଦିନ ଗାଁର ସ୍ମୃତି । ◻



Digitized by srujanika@gmail.com

ଏ ଜାତି
ଏବେ ମଧ୍ୟ ବଞ୍ଚିଛି





Digitized by srujanika@gmail.com

ଓଡ଼ିଶାରେ ମହାବାତ୍ୟା ହେଲା । ଆମେରିକାରୁ, ଜାପାନ୍‌ରୁ, ଲଣ୍ଡନରୁ ଆସିଲା ଚାଉଳ, ଖଣ୍ଡି ଗହମ, ମକା ଗୁଣ୍ଡ, ପଲିଥିନ୍, ଲଣ୍ଠନ, ଲୁଗା, କପଡା । ବିପିଏଲ୍ ବାଲାଙ୍କୁ ମିଳିଲା ଦୁଇ ହଜାର ଓ ସାଧାରଣଙ୍କୁ ମିଳିଲା ହଜାରେ ଟଙ୍କା ଘର ଭଙ୍ଗା ସାହାଯ୍ୟ । ପ୍ରତିଦିନ ରାଜସ୍ୱ ନିରୀକ୍ଷକଙ୍କ ଘର ଆଗରେ ଲାଗିଲା ଶହଶହ ମୋଟର ସାଇକେଲ ଓ ଘର ଭିତରେ କମିଶନ୍ ହଜାରେରେ ଦୁଇ ଶ ଓ ଦୁଇ ହଜାରରେ ପାଆଁଶ । କୋଠାଘର ବାଲା ପାଇଲେ ଦୁଇ ହଜାର ଓ ମାଟି ଘର ବାଲା ପାଇଲେ ହଜାରେ । ଏଥିରୁ କିଏ ବିପିଏଲ୍ ଓ କିଏ ସାଧାରଣ ତାହା ଆପଣ ଜାଣି ପାରୁଥିବେ । କୋଠାଘର ବାଲା ଇନ୍ଦିରା ଆବାସ ଟଙ୍କା ଆଣି ଗାଁରେ ପାଞ୍ଚ ଟଙ୍କାକୁ ସୁଧରେ ଲଗାଇଲେ । ମାଟିଘର ବାଲା ଚିରା ପାଲରେ କୁଡିଆ କରି ରାସ୍ତା କଡରେ ଉପରକୁ ଅନେଇକି ଶୋଇଲେ । ହଉ ଏ ମ୍ୟାଟର ଏଇଠି ରହୁ । ଆମେ ଫ୍ୟାକ୍ଟକୁ ଯିବା ।

ସେହି ମହାବାତ୍ୟା, ଯୋଉ ମହାବାତ୍ୟା କଥା ମୁଁ ଏବେ ଗପିଲି ଓପରେ । ସେହି ମହାବାତ୍ୟା ହବାର ପ୍ରାୟ ଦଶ ବାର ଦିନ ପୂର୍ବରୁ ଦୁର୍ଗା ପୂଜା ଉପଲକ୍ଷେ ଗାଁରେ ଗୋଦାବରୀଶ ମହାପାତ୍ରଙ୍କ 'ଏ ଜାତି ବଞ୍ଚିଛି' ନାଟକ ପରିବେଷଣ ହୋଇଥିଲା ।

ଡବଲ୍ ପେଣ୍ଡାଲରେ ସିରେଇ ଗାଁ । ସିରେଇ ଗାଁର ଚାଉଳ ବଣ୍ଟନ କେନ୍ଦ୍ର । ସେଇ ଚାଉଳ ବଣ୍ଟନ କେନ୍ଦ୍ର ଚାଳ ଛପର ଘର ଉପରେ ଉଡୁଥାଏ ଆମର ଜାତୀୟ ପତାକା ତ୍ରିରଙ୍ଗା ଫରଫର । ତାରି ତଳେ ଜମା ହୋଇଥାନ୍ତି ସ୍ୱେଚ୍ଛାସେବକ, ଦେଶ ସେବକ, ମାତୃ ପୂଜକ, ଜନ ନାୟକ, ଦରିଦ୍ର ବନ୍ଧୁ ଭଳି ବହୁ ସଫାସଫା ମଣିଷ । ତାଙ୍କ ଚତୁର୍ପାର୍ଶ୍ୱରେ ଡହଳ ବିକଳ କେତେଜଣ କଳା ରଙ୍ଗ ବୋଳା କଙ୍କାଳ ସାର ମଣିଷ । ସେମାନେ ଏମିତି ଭାବେ ମେକ୍ ଅପ୍ ନେଇଥିଲେ ଯେ ଅବିକଳ ନଅଙ୍କ ଦୁର୍ଭିକ୍ଷରେ ପଡିଥିବା ଭଳି ଲାଗୁଥିଲେ । ଧନ୍ୟବାଦ ସେହି ଚିତ୍ରାଳୟ ପାର୍ଟିକୁ । ହବନି! ପଟ୍ଟାମୁଣ୍ଡାଇର ଏକ ନମ୍ବର 'ଅନ୍ନପୂର୍ଣ୍ଣା ଚିତ୍ରାଳୟ' । ଯିଏ ବଇନା ନିଏ ପ୍ରାପ୍ୟର ସିକ୍ସଟି ପର୍ସେଣ୍ଟ୍ କଥାବାର୍ତ୍ତାରେ । ଏମିତି ଭାବରେ ସେମାନଙ୍କୁ ରଙ୍ଗରେ ସଜା ଯାଇଥିଲା ଆଉ ଛିଣ୍ଡା ପୋଷାକ ପିନ୍ଧା ଯାଇଥିଲା ଲାଗୁଥିଲା ସତେ ଯେମିତି ନଅଙ୍କ ଦୁର୍ଭିକ୍ଷ ପଡିଛି! ଡବଲ ପେଣ୍ଡାଲର କ୍ଲାଇମାକ୍ସ ମଧ୍ୟ ସେମିତି ହୋଇଥିଲା । ୧୮୬୬ ସାଲର ନଅଙ୍କ ଦୁର୍ଭିକ୍ଷ କ୍ଲାଇମାକ୍ସ ଆକୁରେଟ୍ ଫୁଟି ଉଠିଥିଲା ଡବଲ୍ ପେଣ୍ଡାଲରେ ।

ସିଙ୍ଗଲ ପେଣ୍ଡାଲରେ ଏକ କୋଣରେ ବସିଛି ବେଣୁଧର; ଓଡ଼ିଆ ଜାତିର ସ୍ୱାଭିମାନ୍ । ଅନେଇଥାଏ ଡବଲ ପେଣ୍ଡାଲ ଆଡକୁ । ତାକୁ ସେମିତି ଡିରେକ୍ସନ୍ ଦିଆଯାଇଥାଏ ଅନେଇବାକୁ ଓ ଆଖିକୁ ଛଳଛଳ କରିବାକୁ ।

ନିଜ ଗାଁର ଶହଶହ କଙ୍କାଳ ସେମାନଙ୍କ ପେଟ ଦେଖେଇ, କଙ୍କାଳ ଦେଖେଇ, କାନି ପତେଇ, ଟଣା ଓଟରା କରି ଚାଉଳ ନେଉଥିବାର ଦୃଶ୍ୟକୁ ବେଣୁଧର ଡବଲ୍ ପେଣ୍ଡାଲରେ ଦେଖୁଥାଏ ।



Digitized by srujanika@gmail.com

ଅମୃତାଞ୍ଜନ ଲଗେଇ ଜବରଦସ୍ତ ଲୁହ ବାହାର କରୁଥାଏ ଆଖିରୁ । ଏମିତି ଦିନେ ଗଲା, ଦି ଦିନ ଗଲା, ତିନି ଦିନ, ଆଠ ଦିନ, ଦଶ ଦିନ ପାଣି ପରି ବୋହିଗଲା । ଘରେ ଏଣେ ଏକ କଙ୍କାଳସାର ଆସନ୍ନ ଯନ୍ତ୍ରଣାରେ ଛଟପଟ ହେଉଥିବା ଭୋକିଲା ପରିବାର । ବେଣୁଧର କ'ଣ କରିବ କିଛି ଭାବି ପାରୁ ନଥାଏ । ଭାବୁଥାଏ, ଯାଇ ଚାଉଳ କେନ୍ଦ୍ରରେ ହାତ ପତେଇବ । ପୁଣି ଭାବୁଥାଏ- ନାଁ, ସେ ଏମିତି କେବେ କରି ପାରିବ ନାହିଁ । ସେ କେବେ ହାତ ପାତି ପାରିବ ନାହିଁ । ଉଠି ଠିଆ ହେଉଥାଏ । ପୁଣି ବସି ପଡୁଥାଏ । ଟିକେ ଆଗକୁ ଚାହୁଁଥାଏ, ପୁଣି ପଛକୁ ଫେରି ସେହି ବରଗଛ ମୂଳେ ଅର୍ଥାତ୍ ସିଙ୍ଗଲ୍ ପେଣ୍ଡାଲର ସେଇ ଡାଇସ୍ ତଳେ ବସି ପଡୁଥାଏ ।

ଠିକ୍ ଏହି ସମୟରେ ସିଙ୍ଗଲ ପେଣ୍ଡାଲରୁ ଡବଲ୍ ପେଣ୍ଡାଲ ଆଡକୁ ଷ୍ପଟ୍ ଲାଇଟ୍ ପଡୁଥାଏ । ଡବଲ୍ ପେଣ୍ଡାଲ୍ ଅର୍ଥାତ୍ ସିରେଇ ଗାଁ ଚାଉଳ ବଣ୍ଟନ କେନ୍ଦ୍ରରୁ ଆସୁଥାନ୍ତି ସିଙ୍ଗଲ୍ ପେଣ୍ଡାଲ୍ ଅର୍ଥାତ୍ ବରଗଛ ମୂଳେ ବସିଥିବା ବେଣୁଧର ପାଖକୁ ଦରିଦ୍ର ସାଥୀ, ଜନ ନାୟକ ପଣ୍ଡିତ ଗୋପବନ୍ଧୁ ଦାସ ।

ଯୁବକଟିର ଏପରି ଭାବ ଲକ୍ଷ୍ୟ କରି ଗୋପବନ୍ଧୁ କହିଲେ:

ତୋର ଗାଁ କେଉଁଠି ବାବୁ?

ଚାଉଳ ନେଇଛୁ?

ବେଣୁଧର ପାଟିରୁ ପଦେ ହେଲେ ଉତ୍ତର ନଥିଲା । ସେ ସେମିତି ଖାଲି ଚାହିଁ ରହିଥିଲା । ପୁଣି ଗୋପବନ୍ଧୁ ପଚାରିଲେ:

ଚାଉଳ ନେଇଛୁ ବାବୁ?

-ନା ।

ନେବୁ?

ନା, ମୁଁ ନେବାକୁ ଆସିନି ।

ଆଉ ତେବେ...

ବେଣୁଧର ଆଉ ସମ୍ଭାଳି ପାରିଲାନି । ଭୋ ଭୋ କରି କାନ୍ଦି ଉଠିଲା (ଅମୃତାଞ୍ଜନ୍‌କା କମାଲ୍) । ଏବଂ କହିଲା ଏହି ଗଛ ମୂଳେ ଆମେ ବସି ଶୁଣିଥିଲୁ-

"ଜୀବନ ଥିଲେ ଭାଇ ପାତିବା ନାହିଁ ହାତ
ମଣିଷ ପରି ଦିନେ ମଣିଷ ହୋଇବାତ"

ଏତିକି କହି ବେଣୁଧର ଭୂମି ଉପରେ ଅର୍ଥାତ୍ ପେଣ୍ଡାଲ୍ ଉପରେ କଚାଡି ହୋଇ ପଡିଲେ । ସ୍ଥିର ହୋଇଗଲା ସେଇ ଶରୀରଟି ସବୁଦିନ ପାଇଁ । ତା ମୁଣ୍ଡ ଉପରୁ ହାତ ବୁଲାଇ ଆଣୁଆଣୁ ସେହି ଭଦ୍ର ଲୋକଙ୍କ ଆଖିରୁ ଝରି ପଡିଥିଲା କେଇ ବୁନ୍ଦା ଲୁହ (ଅମୃତାଞ୍ଜନ୍‌କା କମାଲ୍) । ନିଜ କୋହକୁ ଛାତି ଭିତରେ ଚାପି ରଖୁ ରଖୁ ତାଙ୍କ ତୁଣ୍ଡରୁ ବାହାରି ଆସିଥିଲା ପଦେ କଥା- 'ଏ ଜାତି ଏବେ ମଧ୍ୟ ବଞ୍ଚିଛି' ।



Digitized by srujanika@gmail.com

ଗାଁ ଗହଳିର ମୂର୍ଖ ଓ ସରଳ ଲୋକ । ଏ ଅଭିନୟ ଦେଖି ବିଶେଷକରି ସ୍ତ୍ରୀଲୋକମାନଙ୍କ ଆଖିରୁ ଖାଲି ଲୁହ ଝରଣା ପରି ବୋହିବାକୁ ଲାଗିଲା । କେତେକ ସ୍କୁଲ୍ ଝିଅ ଓ ନୂଆ ବାହା ହୋଇଥିବା ବୋହୂମାନେ ସୁଁସୁଁ ହେଲେ । ଲୁଗା କାନିରେ ଲୁହ ପୋଛିଲେ । ବେଣୁଧର ଓ ଗୋପବନ୍ଧୁଙ୍କ ପ୍ରତି ଅଜସ୍ର ସମବେଦନା ଓ ଆହାଃ, ଆହାଃ, ଲୋକଟା ଥିଲା! ଗାଁର ଉତ୍ସାହୀ ଯୁବକମାନେ ପୁରସ୍କାର ଟଙ୍କାରେ ସେ ଦୁହିଁକୁ ପୋତି ପକାଇଲେ । ମାଇକ୍ରୋଫୋନ୍‌ରେ ନିର୍ଦ୍ଦେଶକ ଘନଘନ ପ୍ରଚାର କଲା ଗୋପବନ୍ଧୁ ରୋଲ୍‌ରେ ମୁଗ୍ଧ ହୋଇ ଅମୁକ ଗାଁର ଅମୁକ ମିଶ୍ର ପାଞ୍ଚ ଟଙ୍କା ପଚାଶ ପଇସା ପୁରସ୍କୃତ କଲେ ଏବଂ ବେଣୁଧର ଭୂମିକାରେ ମୁଗ୍ଧ ହୋଇ ସାତ ଟଙ୍କା ସତୁରୀ ପଇସା । ତାଳି ଘନଘନ । ତା ସାଙ୍ଗକୁ ସ୍ତ୍ରୀ ଲୋକଙ୍କ ପଟରୁ ନାକ ସୁଁ ସୁଁ । ଏ ହେଲା ମହାବାତ୍ୟା ପୂର୍ବରୁ ଗାଁରେ ହୋଇଥିବା ଡ୍ରାମାର କ୍ଲାଇମାକ୍ସ ।

ଦୁର୍ଭାଗ୍ୟ, ଏହି ଡ୍ରାମା ହେବାର ଠିକ୍ ଦଶବାର ଦିନ ପରେ ମହାବାତ୍ୟା ହେଲା । ବାତ୍ୟା ମାନେ ଧୂଆଁ କରିଦେଲା । ସବୁ ସଫା ହୋଇଗଲା । ଗାଈ, ଗୋରୁ ଓ ମଣିଷ ପୋକମାଛି ପରି ମରିଗଲେ । ରିଲିଫ୍ ଆସିଲା ।

ଗାଁର ଶେଷ ମୁଣ୍ଡ ସ୍କୁଲ ଘରେ ରିଲିଫ୍ ବଣ୍ଟା ଚାଲିଥାଏ । ରିଲିଫ୍ ବଣ୍ଟା କାର୍ଯ୍ୟ ଦେଖି ଆମ୍ଭର ପୂର୍ବରୁ ଗାଁରେ ହୋଇଥିବା ନଅଙ୍କ ଦୁର୍ଭିକ୍ଷ ଡ୍ରାମା କଥା ମନ ପଡିଗଲା । ଏହା ସହିତ ଆଖି ଆଗକୁ ଆସିଗଲା ଗାଁ ଡ୍ରାମାରେ ସେଇ ଚାଉଳ ବଣ୍ଟା କେନ୍ଦ୍ରରେ ସଫାସଫା ମଣିଷମାନଙ୍କଠାରୁ କେମିତି କଙ୍କାଳଗୁଡେ ହାତ ପାତୁଥିଲେ ଆଉ ଟଣାଓଟରା ଛଡାମଡା କରି ଚାଉଳ ନେଇ ଯାଉଥିଲେ ।

ଦୁର୍ଭାଗ୍ୟବଶତଃ ଗାଁ ଡ୍ରାମାରେ ଗୋପବନ୍ଧୁ ଭୂମିକାରେ ଅଭିନୟ କରୁଥିବା ଗୋବର୍ଦ୍ଧନ ମହାପାତ୍ର (ଗୋବର୍ଦ୍ଧନ ବାବୁ) ବି ସେଇ ରିଲିଫ୍ ବଣ୍ଟନ କାର୍ଯ୍ୟର ମୁଖ୍ୟ ଦାୟିତ୍ୱ ତୁଲାଉଥାନ୍ତି । ଆମେରିକା ସରକାର ପକ୍ଷରୁ ରିଲିଫ୍ ଆସିଛି ।

କହିବାକୁ ଲାଜ ଲାଗୁଛି । ଗୋବର୍ଦ୍ଧନ ବାବୁଙ୍କ ଆଖିର ଚାହାଣି ଓ ତରବରିଆ ହାବଭାବ ଓ ଢଙ୍ଗରଙ୍ଗରୁ ଜଣାପଡୁଥିଲା ଯେମିତି ସେ ଚିନ୍ତା କରୁଥିଲେ ଦୁଇ ବସ୍ତା ସରୁ ଚାଉଳ, ପଲିଥିନ୍ ପାଲ, ଡାଲି, ଅଟା, ବସ୍ତାଏ ବାସୁମତୀ ଚାଉଳ, ଗୋରୁ ଖାଦ୍ୟ, ଗୁଡ, ପ୍ଲାଷ୍ଟିକ୍ ଛପା, ନୂଆନୂଆ ଶାଢି, ପିଲାଙ୍କ ପୋଷାକ, କମ୍ବଳ ଆଦିକୁ ଚଳୁ କରିବାର ଏକ ଅଭିନବ ଯୋଜନା! ଆଉ ବେଣୁଧର ଭୂମିକାରେ ଅଭିନୟ କରୁଥିବା ଶଙ୍କରା ବାତ୍ୟାବେଳେ ସମସ୍ତେ କିଏ କୁଆଡେ ଘର ଛାଡି ନିରାପଦ ସ୍ଥାନକୁ ଚାଲି ଯାଇଥିବାବେଳେ ଆ'ତା ଘରେ ପଶି ସିନ୍ଦୁକ/ବାକ୍ସ ତାଡି ଟଙ୍କା, ପଇସା, ସୁନା ଗହଣା ଚୋରି କରି ଧରା ପଡି ବହେ ମାଡ ଖାଇ ସାରିବା ପରେ ବି ପୁଣି ସେଇ ରିଲିଫ୍ ବଣ୍ଟା ଯାଉଥିବା ସ୍ଥାନର ପଛ ପଟୁ ଏକ ଛୋଟ ପୁଡି ଚୋରି କରିବାକୁ ପ୍ରୟାସ ଜାରି ରଖିଥିଲା ।

ଏ ଦୃଶ୍ୟ ଦେଖି ସାରିବା ପରେ ମୋ ପାଟିରୁ ବି ଗୋପବନ୍ଧୁଙ୍କ ପରି ସେମିତି ପଦେ ବାହାରି ଆସିଥିଲା-

ଏ ଜାତି ଏବେ ମଧ୍ୟ ବଞ୍ଚିଛି? ◻



Digitized by srujanika@gmail.com

ସେଇ ବେହେଡା ଦାନ୍ତି ସ୍ତ୍ରୀ ଲୋକଟି ମୋତେ ଅନେଇ ହସୁଥିଲା ।

ତେନ୍ତୁଳି ମଞ୍ଜି ପରି ତାର ବତିଶ୍ ଦାନ୍ତ ଓ ଜୋକ ପରି ଦୁର୍ଲଭ ଓଠଟି ତାର ଗେଟ୍‌ଅପ୍‌କୁ ଅଧିକ ଅନାକର୍ଷଣୀୟ କରିବାକୁ ସମର୍ଥ ହେଉଥିଲା ।

ତାର ଫଟା ଓଠରୁ ପାନ ଛେପ ଗଳି ପଡୁଥିଲା ।

ମଇଁଷି ଚମ ପରି ଦେହଟାରୁ ପେଟଟା ବାହାରକୁ ଝୁଲିକି ରହିଥିଲା ।

ସେଇ ସ୍ତ୍ରୀ ଲୋକଟି କିନ୍ତୁ ହସୁଥିଲା ।

ଆଖି ନଚଉ ଥିଲା । ପ୍ରେମିକା ହେବାକୁ ଅପଚେଷ୍ଟା କରୁଥିଲା ।

ମୁଁ ତିରିଶି ଟଙ୍କା ପକେଟରୁ କାଢ଼ିଲି । ସେ ମୋତେ ଏକ ଅନ୍ଧାରିଆ ଚାଳି ଘର ଭିତରକୁ ଡାକିନେଲା । ମାଛି ଭଣଭଣ । ଗୋଟା ମୁଷ୍ଟୁଟିଆ ଓ ଆଇଁଷିଣିଆ ଗନ୍ଧରେ ମୋତେ ଅଇ ଉଠାଇଲା । କିନ୍ତୁ ମୁଁ ସେହି ମୁହୂର୍ତ୍ତରେ ଉଠେଇ ଆସୁଥିବା ବାନ୍ତିକୁ ଚାପି ଦେବାକୁ ସମର୍ଥ ହୋଇଥିଲି । ମାଟି ଚଟାଣ ଉପରେ ଏକ ପ୍ଲାଷ୍ଟିକ୍ ଛପା ବିଛେଇ ଦେଲା ଏବଂ ଶାଢ଼ି ଟେକିଦେଲା । ଇଲୋ ବୋଉ କି ଦୁର୍ଗନ୍ଧ । ମ୍ୟୁନିସିପାଲିଟି ଡ୍ରେନ୍ ଠାରୁ ବି ଅପରିଛନ୍ନ! ତା ଡଙ୍ଗ ସନ୍ଧିରେ ଖାଲି ଫ୍ୟାଚ୍ ଫ୍ୟାଚ୍ ଯାଦୁ । ଏସବୁ ଦେଖି ସାରିବା ପରେ ବାନ୍ତିରେ ମୋ ଦେହ ବୁଲେଇ ପକେଇଲା । ତେବେ ମୁଁ ତା ପ୍ରତି ଦୟା ପରବଶ ହୋଇ ଉକ୍ତ ବାନ୍ତିକୁ ସମ୍ପୂର୍ଣ୍ଣ ଭାବେ ସ୍ଥଗିତ କରି ଦେଇଥିଲି । ଏହା ସତ୍ତ୍ୱେ ବି ତାର ଗର୍ବ ଉଠିଆ କମ୍ ନଥିଲା ।

ମୋ ପେଣ୍ଟ୍‌କୁ ଟାଣି ଦେଇ କହିଲା: ଏ ଶଳା, ଶୀଘ୍ର କାମ ସାରି ଘରକୁ ଯା । ଏତେ ମରେଇ ହବାକୁ ମୋ ପାଖରେ ଟାଇମ୍ ନାହିଁ ।

ସତେକି ରାଷ୍ଟ୍ରପତି କି ପ୍ରଧାନମନ୍ତ୍ରୀ କି ଅମିତାଭ୍ ବଚ୍ଚନ୍ କି ମାଇକେଲ୍ ଜାକ୍‌ସନ୍! ହାରାମୀ ଶାଳି!

ବେଶ୍ୟାଟାର ଏ ଟାଣ କଥା ଶୁଣିବା ପରେ ମୋର ପେଣ୍ଟ୍ ଖୋଲିବାକୁ ଆଉ ଇଚ୍ଛା ହେଲାନି । ମୁଁ ତା ବ୍ଲାଉଜ୍ ଭିତରେ ଟିକେ ହାତ ପୂରେଇବାକୁ ଚେଷ୍ଟା କଲାରୁ ଛାଏ କିନା ଏକ ଚଟକଣା ବସେଇ ଦେଲା ମୋ ଗାଲରେ । କହିଲା: ଛତରା ଟୋକା, ଯା ଏଠୁ । ମୁଁ କ'ଣ ତୋ ଲଭର୍ ନା ମାଇକିନା ।

ସେଇ ଶାଳି ବେଶ୍ୟାଟା ମୋତେ ବହୁତ ହଇରାଣ କଲା । ମୋ ପକେଟରୁ ମନି ପର୍ସ ଛଡେଇ ନେଇଗଲା । ସବୁତକ ପଇସା କାଢ଼ି ନେଇ ମୋତେ ଖାଲି ପର୍ସଟା ଫେରେଇଲା । ମୋ ପାଖରେ ଏମିତିକି ଘରକୁ ଫେରିବାକୁ ଅଟୋ ଭଡା ମଧ୍ୟ ନଥିଲା । ମୁଁ ତାକୁ ବହୁ କାକୁତି ମିନତି ହେଲି । କିନ୍ତୁ ସେ ମୋତେ ଠେଲି ଦେଇ ଚାଲିଗଲା । ଗୋଟିଏ ହେଲେ ସିଙ୍ଗିଲ୍ ପଇସା ମୋତେ ଫେରେଇଲାନି । ଏ ଘଟଣା ପରେ ମୋତେ ଭାରି କାନ୍ଦ ମାଡିଲା । ଘର କଥା ମନ ପଡିଲା । ମୋ ବୋଉ କଥା ମନ ପଡିଲାରୁ ମୁଁ ଆଉ ସମ୍ଭାଳି ପାରିଲିନି, କାନ୍ଦି ପକେଇଲି । ଯେମିତି ମୁଁ ସବୁକିଛି



Digitized by srujanika@gmail.com

ହୁରେଇ ରାସ୍ତାର ପାଗଳ ହୋଇଯାଇଛି । ଭିକାରି ହୋଇ ଯାଇଛି!

କାନ୍ଦିକାନ୍ଦି ଶାଳି ବେଶ୍ୟାଟାକୁ ଶୋଧିଶୋଧିକା ଆସିଲି । ତା ବାପଅଜା ଚଉଦ ପୁରୁଷ ଉଦ୍ଧାର କଲି । ସ୍ତ୍ରୀଲୋକଟା ଦ୍ୱାରା ଅପମାନିତ ହୋଇଥିବାରୁ ମୋର ମରିଯିବାକୁ ଇଚ୍ଛା ହେଉଥିଲା । ତେବେ ବେଶ୍ୟାଠାରୁ ଆହରଣ କରିଥିବା ଲଜ୍ଜା ଓ ଅପମାନକୁ ସମ୍ବଳ କରି ମୁଁ ଘରକୁ ଫେରିଲି ଓ ବେଡ୍( ଖାଲି ଖଟିଆରେ ପଡିଥିବା ପ୍ଲାଷ୍ଟିକ୍ ଛପାଟି) ଉପରେ ପଡି କଇଁକଇଁ ହୋଇ କାନ୍ଦିଲି ।

କାନ୍ଦିଲାରୁ ମୋର ଗୀତା ନୂଆବୋଉ କଥା ମନ ପଡିଲା । କେତେ ରାତି ଗୀତା ନୂଆବୋଉ ପାଖରେ ଶୋଇଛି । ତା କୋଳରେ । ତାକୁ କୁଣ୍ଢେଇକି । କେତେଥର ଗୀତା ନୂଆବୋଉର ଛାତିରେ ହାତ ମାରି ଦେଇଛି । ଆଃ... ଗୀତା ନୂଆବୋଉର ଗୋରା ଦେହ...! ଗୀତା ନୂଆବୋଉ ଗୋରୀ ଓ ସୁନ୍ଦରୀ । ତା ଜଂଘ ସଫା କାଗଜ ଭଳି । ମହର୍ଗା ଭାଇ ମାସମାସ ଧରି କୁଆଡକୁ କାମ କରିବାକୁ ଯିବେ ଯେ ଘରେ ଏକା ଗୀତା ନୂଆବୋଉ ବସିବସି ବୋର୍ ହେଉଥିବେ । ସମ୍ପୂର୍ଣ୍ଣ ବୋର୍ ହୋଇଗଲେ ମୋତେ ଘରକୁ ଡାକିବେ । ସେତେବେଳେ ମୁଁ ପ୍ଲସ୍ ଟୁ ସାରି ଗାଁରେ ଛୁଟି କଟଉଥାଏ । ମୁଁ ଆମ ଗାଁର ଭଲ ପିଲାବୋଲି ଗାଁଲୋକେ ମୋତେ ଟିକେ ଭଲ ପାଆନ୍ତି । ଏହାଛଡା ଆମ ସ୍କୁଲର ମୁଁ ଭଲ ପିଲା ଥିଲି ।

ସ୍କୁଲ କଥା ମନ ପଡିଯିବାରୁ ମୋର ଏବେ ଆମ ବିଜ୍ଞାନ ସାର୍ ଆଉ ନବମ ଶ୍ରେଣୀରେ ପଢୁଥିବା ସେଇ ଫୁଲେଇ ରଶ୍ମିତା ଟୋକି କଥା ମନ ପଡୁଛି ।

ସେତେବେଳେ ମୁହଁ ସଞ୍ଜସଞ୍ଜ ହେଉଥାଏ । ଆଉ କେହି ପିଲା ଟ୍ୟୁସନ୍‌କୁ ଆସି ନଥାନ୍ତି । ମୁଁ ହୁଡସ ପଶିଗଲି ସାର୍‌ଙ୍କ ଘର ଭିତରକୁ । ଇଲୋ ବୋଉ କି ଦୃଶ୍ୟ! ଭିଡିଓର ସେଇ ବ୍ଲୁ ଫିଲ୍ମ ଭଳି । ଗୋଲାପ ଗୋଲାପ ରଙ୍ଗର ଲଙ୍ଗଳା ଦେହର ନେଟ୍ ପ୍ରାକ୍ଟିସ୍ ମାନେ ଅଭ୍ୟାସ ମ୍ୟାଚ୍!

କାହିଁକିନା ସେହି ବର୍ଷ ଦୁର୍ଗା ପୂଜାକୁ ଆମ ଗାଁର ଯୁବକ ସଂଘର ଟୋକାମାନେ ଗାଁରେ ଦୁଇ ଦିନ ଭିଡିଓ ଚଳାଇଲେ । ମାଇପେ ଓ ଝିଅମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ଭଲ ଭଲ ଓଡ଼ିଆ ଫିଲ୍ମ ଗାଁରେ ଚାଲିଲା । ଜଗା ହାତରେ ପଘା, ଦଇବ ଦଉଡି, ଆସୁଛି ମୋ କାଳିଆ ସୁନା, ତୁଣ୍ଡ ବାଇଦ, ମମତାର ଡୋରୀ, ମାନିନୀ, ପରଦେଶୀ ଚଢେଇ ଆଦି ସୁପର ହିଟ୍ ଓଡ଼ିଆ ଫିଲ୍ମ ଚାଲିଲା । ଦି ଦିନ କାଳ ଗାଁ ଝିଅମାନେ ବୋବାଲ୍ କଲେ । ଉତ୍ତମ ମହାନ୍ତି କେମିତି ହର ପଟ୍ଟନାୟକକୁ ଢିସୁମ୍ ଢିସୁମ୍ ମାଡ ମାରିଲା, ଆଉ ଅଳ୍ପ ଡେରି ହୋଇଥିଲେ କେମିତି ସେହି ନିଷ୍ଠୁର ହର ପଟ୍ଟନାୟକଟା ଅପରାଜିତାର ଇଜତ ନେଇ ଯାଇଥାନ୍ତା, ଭାଗ୍ୟ ଭଲ ଠିକ୍ ସମୟରେ ଉତ୍ତମ ମହାନ୍ତି ପହଞ୍ଚିଗଲା । ରଜନୀଗନ୍ଧା ଫିଲ୍ମରେ ବୈଶାଳୀ କି ରୋଲ୍ କରିଛି! ବୈଶାଳୀ ମରି ଯାଇଛି ଆଉ ତାର ପ୍ରେତାତ୍ମା କିପରି ଛାଇ ପରି ଉତ୍ତମ ମହାନ୍ତି ପଛରେ ଘୁରିଘୁରି ବୁଲୁଛି ଆଉ ତାକୁ ପୂର୍ବ ପରି ପ୍ରେମ କରୁଛି । ଦୁହେଁ ମିଶି ଭିଲିଆନର ପ୍ରତିଶୋଧ ନେଉଛନ୍ତି । ରଜନୀଗନ୍ଧା ଫିଲ୍ମର ଗୀତଗୁଡା କେତେ ସୁନ୍ଦର ହୋଇଛି! ଉତ୍ତମ ମହାନ୍ତି ବୈଶାଳୀକୁ ଧରିବାକୁ ଯାଉଥିବ ଆଉ ସେ ଚଅଟ୍ କିନା ଉଭାନ ହୋଇଯାଉଥିବ ।



Digitized by srujanika@gmail.com

କି ରୋମାନ୍ସ! କି ସସ୍‌ପେନ୍ସ! ଏମିତି ସବୁ ଝିଅମାନେ ପିଣ୍ଡାରେ ବସି ଆଲୋଚନା କରୁଥିବେ ।

ଗଲା ରଜରେ କେନ୍ଦ୍ରାପଡା ଭାସ୍କର ହଲ୍‌ରେ ମୁଁ ଯେତେବେଳେ ଏହି ଫିଲ୍ମ ଦେଖିଥିଲି ସେତେବେଳେ ଖୁବ୍ ବଢିଆ ଲାଗିଥିଲା । କିନ୍ତୁ ଭିଡିଓରେ ସେମିତି ଲାଗିଲାନି ବୋଲି ଗାଁର ଡେଙ୍ଗୀ ଝିଅ ସବିତା ବେକକୁ ଓପରକୁ ଟେକି କହୁଥିଲା ।

ନିଜକୁ ଅତି ସୁନ୍ଦରୀ ଭାବୁଥିବା ଚମେଲୀ ଗଲା କାଲି ରାତିରେ ଫିଲ୍ମ ଦେଖି ସାରିବା ପରେ ସେ ନିଜକୁ ସମ୍ପୂର୍ଣ୍ଣ ଭାବେ ହିରୋଇନ୍ ହିରୋଇନ୍ ଭାବି ନେଇ ସାରିଥିବ । ତାକୁ ଖାଲି ସବୁ ସ୍ୱପ୍ନ ସ୍ୱପ୍ନ ଲାଗୁଥିବ । ଘରେ ବୋଉ କି ଅପା ଯେତେ କାମ ବରାଦ କଲେବି ସେଗୁଡା କରିବାକୁ ସେ ପସନ୍ଦ କରୁ ନଥିବ । ସେ କ'ଣ ସେହି ଫିଲ୍ମର ଗୀତ 'ମୁଁ ଏକ ସ୍ୱପ୍ନର ସୁନେଲୀ ସନ୍ଧ୍ୟା, ଦେଇଥିଲି ଯାର ନାଁ... ରଜନୀଗନ୍ଧା... ବୋଲି ପାରିବନି ଭାବି ରୋମାଞ୍ଚିତ ହୋଇ ପଡୁଥିବାବେଳେ ଗାଁର ସବୁଠୁ ସୁନ୍ଦର ଯୁବକ କୁହାଯାଉଥିବା ସୌମ୍ୟ ସେଇ ବାଟ ଦେଇ ଚାଲି ଯାଉଥିବ । ଚମେଲି ତାକୁ ଉତ୍ତମ ମହାନ୍ତି ଭଳି ଭାବି ନେଇ ମନେମନେ ସେଇ ଗୀତକୁ ରିଭ୍ୟୁ କରୁଥିବ ଓ ଉତ୍‌ଫୁଲିତ ହୋଇ ପଡୁଥିବ । ସେତେବେଳେ ଘରୁ ବାପାଙ୍କ ଡକରା ଆସିବାରୁ ଚମେଲି ମନ ଦୁଃଖରେ ଘରକୁ ଫେରି ଯାଉଥିବ ।

ଗାଁରେ ଦୁଇ ଦିନ ଭିଡ଼ିଓ ଚାଲିଲା ପରେ ଯୁବକ ସଂଘ ଟୋକାମାନେ ପର ଦିନ ରାତିରେ କ୍ଲବ୍ ଘରେ ଭିଡ଼ିଓ ଚଳାଇ ନିଜେନିଜେ ଦେଖିଲେ । ଆଉ କାହାରିକୁ ଦେଖେଇ ଦେଲେ ନାହିଁ । ଆମେ ପିଲାମାନେ ଯେତେ କାକୁତି ମିନତି ହେଲୁ, ହେଲେ ନିଷ୍ଠୁର ଯୁବକ ସଂଘ ପିଲାମାନେ ଆମ କଥା ଶୁଣିଲେନି ; ମୁଁ ଯାଇ ସେଠି ନଙ୍ଗପଙ୍ଗ ହଉଥିଲି । କାଳେ ମୋତେ କେହି ଦୟା କରି ଫିଲ୍ମ ଦେଖିବାକୁ ଭିତରକୁ ଡାକିବେ । ସେଇ ଆଶାରେ ମୁଁ ସେଠାରେ ଏପଟସେପଟ ହଉଥାଏ । ହେଲେ ଶେଷ ପର୍ଯ୍ୟନ୍ତ ମୋତେ କେହି ହେଲେ ଡାକିଲେ ନାହିଁ । ମୋର ସେତେବେଳେ ସପ୍ତମ ଶ୍ରେଣୀ । ଛୋଟ ପିଲାଙ୍କୁ ଦୟା ଦେଖେଇ ଡାକିବେ ବୋଲି ମୋର ଶେଷ ପର୍ଯ୍ୟନ୍ତ ବିଶ୍ୱାସ ଥିଲା । କିନ୍ତୁ ତାହା ହେଲା ନାହିଁ ।

ନିରାଶ ହୋଇ ଶେଷରେ ଦି ଦି ଥର ମେଟ୍ରିକ୍ ପରୀକ୍ଷା ଦେଇ ଫେଲ୍ ହୋଇଥିବା ଆମ ଗାଁର ସବୁଠୁ ବାଳୁଙ୍ଗା ଟୋକା ମଙ୍ଗୁଳିଆକୁ କହିଲି: ସେମାନେ ଆମକୁ କାହିଁକି ଭିଡିଓ ଦେଖେଇ ଦେଉ ନାହାନ୍ତି କିରେ?

ମଙ୍ଗୁଳିଆ କହିଲା: ତୁ ପିଲା ଲୋକଟା, ସେହି ଫିଲ୍ମ ଦେଖିଲେ ତୋ ଦେହ ଖରାପ ହେବ । ସେମାନେ ବ୍ଲୁ ଫିଲ୍ମ ଦେଖୁଛନ୍ତି । ସେଥିରେ ଲଙ୍ଗଳା ପୁଅ ଆଉ ଝିଅ ବାହାରନ୍ତି । ମୁଁ ହାତାଶ ହେଲି । ମୋର ଭାରି ଦେଖିବାକୁ ଇଛା ହେଲା । କିଛି ପିଲା କବାଟ ସନ୍ଧିରେ ମୁହଁ ଗଳେଇ ଦେଖୁଥାନ୍ତି । ବହୁ କଷ୍ଟରେ ମୁଁ ଟିକିଏ ମୁହଁ ଗଳେଇ ଦେଖିଦେଲି । ଇଲୋ ବୋଉ! ଦେହ ଭିତର ଖାଲି ଝିମ୍‌ଝିମ୍ ହୋଇଗଲା । ଗୋଟେ ବିଜୁଳି ତରଙ୍ଗ ତଳି ପେଟରୁ ସୃଷ୍ଟି ହୋଇ ଛାଡି ଦେଇ କ୍ରମେ



Digitized by srujanika@gmail.com

ମସ୍ତିଷ୍କକୁ ଆକ୍ରାନ୍ତ କରି ପକେଇଲା ।

ହଁ ରଶ୍ମିତା କଥାରୁ ଏତେବାଟ ଯାଇଥିଲା । ସାର୍‌ଙ୍କ ଖଟ ଉପରେ ଅଝାଳ ପରି ପଡିଥାଏ ରଶ୍ମିତା । ଉଭା ଲଙ୍ଗଳା । ସାର୍ ବି ଲୁଙ୍ଗି ପିନ୍ଧି ନଥାନ୍ତି ।

ରଶ୍ମିତା ଦେହଟା କି ସୁନ୍ଦର! ମୁଁ ପ୍ରଥମ କରି ସେଦିନ ଦେଖିଲି ରଶ୍ମିତା ଖୋଲା ଦେହକୁ । ଅବଶ୍ୟ ପୂର୍ବରୁ ରଘୁ ମାଷ୍ଟରର ଝିଅ ଉର୍ମିଳାର ଅଳ୍ପ ଖୋଲା ଦେହ ପୋଖରୀରେ ଗାଧୋଉଥିଲାବେଳେ ଦେଖିଥିଲି ।

ରଶ୍ମିତା ଦେହଟା ଏତେ ସୁନ୍ଦର! କିନ୍ତୁ ଫ୍ରକ୍ ପିନ୍ଧିଲା ବେଳେ ଏତେ ସୁନ୍ଦର ଲାଗେନି । ଉର୍ମିଳା ଦେହ କିନ୍ତୁ ରଶ୍ମିତା ପରି ନୁହେଁ । ରଶ୍ମିତା ଦେହ ଅଲଗା । ଗୋରା, କାଗଜ ଭଳି । ଉର୍ମିଳା ଗୋରୀ ଓ ପତଳୀ ହେଲେ କ'ଣ ହେବ; ସେ ସବୁବେଳେ ଗୋଟେ ଶୁଖିଲା ଟଗର ଫୁଲ ଭଳି । କିନ୍ତୁ ରଶ୍ମିତା ଗୋଲାପ ଭଳି ସତେଜ ଓ ବାସ୍ନାମୟ ।

ମୋତେ ଦେଖି ସାର୍, ଫଟାଫଟ ଲୁଙ୍ଗି ପିନ୍ଧି ପକାଇଲେ । ମୁଁ ବାହାରକୁ ଚାଲି ଆସିଲି । ମୋ ମୁଣ୍ଡ ଘୂରାଇ ପକାଉଥିଲା । ସାର୍ ବାହାରକୁ ଆସି ମୋତେ ଗେହ୍ଲେଇ ଗେହ୍ଲେଇ କହିଲେ ଯାହା ଦେଖିଲୁ କାହା ଆଗେ କହିବୁନି । ତୁ ଭଲ ପିଲା । ତତେ ମୁଁ ସବୁବେଳେ ପଢେଇବି । ତତେ ଭଲ ପାଠ ପଢେଇ ଫାଷ୍ଟ୍ କ୍ଲାସ୍ କରେଇବି । ତୁ ଏଥର ଆମ ସ୍କୁଲର ଟପର୍ ହେବୁ । ତୋ ବାପା କହୁଥିଲେ ତତେ ଟିକେ ଭଲ କି ଦେଖିବାକୁ । ତତେ ଏଣିକି ବହୁତ ସମୟ ଦେଇ ପଢେଇବି । ତୁ ଭଲ ରେଜଲ୍ଟ କରିବୁ ଇତ୍ୟାଦି ଇତ୍ୟାଦି ।

ବହୁତ ଗୁଡାଏ ବୁଝାଇଲେ ବିଜ୍ଞାନ୍ ସାର୍ ସେଦିନ ମୁହଁ ସଞ୍ଜରେ । ହେଲେ ମୋ ମୁଣ୍ଡ କୋଉ ସେଥିରେ ପଶୁଥାଏ । ରଶ୍ମିତାର ଧୋବ ଫରଫର ଦେହଟା ଦେଖିବା ପରଠାରୁ ମୋ ଦେହ ଭିତରଟା ରିମ୍‌ଝିମ୍ କରି ଯାଉଥାଏ । ତଳି ପେଟରେ କ'ଣ ଗୋଟା ଉବୁକା ମାରୁଥାଏ । ଶଳା, ଚନ୍ଦା ମୁଣ୍ଡିଆ ବିଜ୍ଞାନ ମାଷ୍ଟରଟାର କ'ଣ ଅଛି ଯେ ରଶ୍ମିତା ତା ପ୍ରେମରେ ଫିଦା ହୋଇଯାଇଛି! ସେବେଠୁ ଯେମିତି ସେହି ଚନ୍ଦା ମୁଣ୍ଡିଆ ବିଜ୍ଞାନ ମାଷ୍ଟରଟା ମୋର ପ୍ରତିଦ୍ୱନ୍ଦ୍ୱୀ ପାଲଟି ଯାଇଥାଏ । କିନ୍ତୁ ରଶ୍ମିତାର ଧୋବ ଫରଫର ଜଂଘ ...! ଆଃ..ଃ..ଃ..! ରଶ୍ମିତା... । ଶଳା..ଃ..ଃ.. ବିଜ୍ଞାନ ମାଷ୍ଟର... । ମୋତେ ଫାଷ୍ଟ୍ କ୍ଲାସ୍ କରେଇବୁ ନା ଚୋପାଟା କରେଇବୁ । ଶଳା ଲମ୍ପଟ ମାଷ୍ଟର । ଗୋଟା ସରଳ ନିରିହ ଝିଅଟାର ଜୀବନ ସହ ଖେଳୁଛୁ ଏବଂ କହୁଛୁ ମୋତେ ପାଠ ପଢେଇ ଭଲ ମଣିଷ କରିବୁ?

ରଶ୍ମିତାଟା ମୋତେ ଏମିତି ଭଲ ପାଆନ୍ତା କି? ମୁଁ ତାକୁ ସବୁ ନୋଟ୍ ଦିଅନ୍ତି । ତାକୁ ମାଥ୍‌ମେଟିକ୍ସ ବୁଝାଇ ଦିଅନ୍ତି । ମୁଁ କ'ଣ ଚନ୍ଦା ମୁଣ୍ଡିଆ ମାଷ୍ଟରଠାରୁ ଏତେ ଅସୁନ୍ଦର? ମୁଁ ତ ଆମ କ୍ଲାସ୍‌ରେ ଭଲ ପଢୁଛି । ଭଲ ଷ୍ଟୁଡେଣ୍ଟ । କ୍ଲାସ୍‌ର ତେଙ୍ଗି ଝିଅ ତଲି କିନ୍ତୁ ମୋ ସହ କଥା ହେବାକୁ କେତେ ବିକଳ ହେଉଥାଏ । ତଲିଠାରୁ ରଶ୍ମିତାଟା ସୁନ୍ଦର! ଆଃ...! ରଶ୍ମିତାର ଧୋବ ଫରଫର



Digitized by srujanika@gmail.com

ଦେହ...! ଗୋଲାପ ଭଳି ବାସ୍ନାମୟ!

ଅବଶ୍ୟ ରଶ୍ମିତା ସେହି ଘଟଣା ପରଠାରୁ ମୋତେ ଦେଖିଲେ ଲୁଚିଛି । ମୋ ଆଗରେ କଥା ହେବାକୁ ସାହସ କରିନି । ବୋକି ଝିଅଟା; ମୁଁ କ'ଣ ଚନ୍ଦା ମୁଣ୍ଡିଆ ମାଷ୍ଟରଟାଠାରୁ ସୁନ୍ଦର ନୁହେଁ?

ବିଚାରୀ ଗୀତା ନୂଆବୋଉର ଆଜି ପର୍ଯ୍ୟନ୍ତ ପିଲାଛୁଆ ହେଲେନି । ମହର୍ଗା ଭାଇଟା ବହୁତ ଭଲ ମଣିଷ । ହେଲେ ମହର୍ଗା ଭାଇଟା ସୁନ୍ଦର ନୁହେଁ । କଳା ହେଇକି ବାଙ୍କରା ଲୋକଟା । ଭଗବାନ କିନ୍ତୁ ସେହିଭଳି ଅସୁନ୍ଦର ଲୋକମାନଙ୍କୁ ସୁନ୍ଦର ସୁନ୍ଦର ଝିଅ ଜୁଟେଇଥାନ୍ତି । ଗୀତା ନୂଆବୋଉ ଡେଙ୍ଗୀ । ପେଟ ଶିଲ୍ପା ଶେଟ୍ଟୀ ପରି ହେଲା ବେଳକୁ ଜଂଘ ମମତା କୁଲକର୍ଣ୍ଣୀ ପରି । ଭେସ୍ । ବେକାର । ମୋତେ ସେମିତି ସୁଇଟିଏ ମିଳନ୍ତାକି ବାରମ୍ବାର ଭାଗବନଙ୍କୁ ଡାକିଛି । ଭଗବାନ୍ । ଭଗବାନ ତ ମୋର ପ୍ରତିଦ୍ୱନ୍ଦ୍ୱୀ । ସେ ମୋ ପାଇଁ ନିହାତି ଖରାପ ଝିଅ ଜୁଟେଇବେ । ମୁଁ ଏହା ଜାଣିଛି ।

ଏବେ କିନ୍ତୁ ଗୀତା ନୂଆବୋଉ ବୟସ୍କା ହୋଇଗଲାଣି । ମହର୍ଗା ଭାଇ କାମ କରିକରି ଥକି ପଡିଲେଣି । ମୁଁ ମଝିରେ ମଝିରେ ଗାଁକୁ ଗଲେ ମହର୍ଗା ଭାଇ ଘରକୁ ଯାଏ । ଗୀତା ନୂଆବୋଉ ଚକୁଳି ପିଠା କରି ମୋତେ ଖୁଆଏ । ଦୁଃଖ କରେ । ଭାଗ୍ୟକୁ ନିନ୍ଦା କରେ । ପୂର୍ବ ଭଳି ତାର ଆଉ ଚପଳତାମି ନ ଥାଏ । କେଜାଣି କାହିଁକି ମୁଁ ନିଜକୁ ଦୋଷୀଦୋଷୀ ମନେ କରେ । ମୋର ଚାକିରି ବାକିରି ହେଉ ନଥିବାରୁ ଗୀତା ନୂଆବୋଉ ଦୁଃଖ କରେ । ମୁଁ କ'ଣ କରିବି? ପରୀକ୍ଷା ଫରୀକ୍ଷା ଦେଉଛି । ବାଜୁନି । ରେଲୱେ, ବ୍ୟାଙ୍କିଙ୍ଗ୍, ଓଡ଼ିଶା ପୋଲିସ ସବୁ ଦଉଛି । ହେଲେ ଗୋଟା ବାଜୁନି ।କରପ୍‌ସନ, ମାନିପୁଲେସନ୍ ସବୁଠି ।

ଗୀତା ନୂଆବୋଉ ମୋତେ ଚାକିରି ମିଳୁ ନଥିବାରୁ ଦୁଃଖ କରୁଥିବାବେଳେ ଗୀତା ନୂଆବୋଉର ପିଲାଛୁଆ ହେଉ ନଥିବାରୁ ମୁଁ ସେଥିପାଇଁ ଦୁଃଖ କରୁଥାଏ । ଯେମିତି ଗୀତା ନୂଆବୋଉ ପାଇଁ କୋଳର ଶିଶୁ ଏବଂ ମୋ ପାଇଁ ଚାକିରି ନିଷ୍ପ୍ରାପ୍ୟ ଓ ଅପହଞ୍ଚ!

ଦିନେ ଦୁଇ ଦିନ ଗାଁରେ ରହିଲା ପରେ ପୁଣି ଭୁବନେଶ୍ୱର ଚାଲିଯାଏ । ଏତେ ପାଠ ପଢେଇ ସାରିବା ପରେ ଚାକିରି ବାକିରି ହଉନି । ବାପା, ବୋଉ ବେସ୍ତ ହୋଇ ପଡୁଛନ୍ତି । ମୋର ମନ ବି ଭଲ ରହୁନି ।

ଏହି ବେଶ୍ୟାଟା ମୋ ମନି ପର୍ସ ଛଡେଇ ନେବାଠାରୁ ମୋତେ କିଛି ଭଲ ଲାଗୁ ନଥିଲା । ଗୀତା ନୂଆବୋଉ କଥା ମନ ପଡିଗଲାରୁ ମୁଁ କାନ୍ଦକାନ୍ଦ ହୋଇ ଯାଉଥିଲି ।

ବାପା ବୋଉଙ୍କ କଥା ମନ ପଡୁଛି । ନୀତୁ ଅପା କଥା ମନ ପଡୁଛି ।

ଦିନେ ମୁଁ ଦେଖିଥିବା ମୋର ପ୍ରିୟ ସ୍ୱପ୍ନମାନେ କ୍ରମଶଃ ମୋତେ ଭୁଲି ଯିବାକୁ ଆରମ୍ଭ କରୁଛନ୍ତି । କ୍ରମଶଃ ମୁଁ ସ୍ୱପ୍ନଛଡା ହୋଇ ଯାଉଛି ।

□



Digitized by srujanika@gmail.com



# ଜୟ ହନୁମାନ ମଠ,
# ପଙ୍ଗାମୁଣ୍ଡାଇ



Digitized by srujanika@gmail.com

ନିଦ ଭାଙ୍ଗିଗଲା ବେଳକୁ କିଛି ଭୁଟୁଭୁଟୁ ଶବ୍ଦ ନିଆଲ୍ ମାଷ୍ଟରଙ୍କ କାନରେ ବାଜିଲା । ସେତେବେଳକୁ ପାହାନ୍ତା ପାହାନ୍ତା ହୋଇ ଆସୁଥିଲା । ଯଦିଓ ସେତେବେଳକୁ କାଉ ବୋବାଉଥିଲେ, କୁକୁର ଭୁକୁଥିଲେ ତଥାପି ରାତି ପାଇ ନଥିଲା ।

ସୁବାସ୍ ନିଆଲ୍ ବିଏ ବିଇଡି । ମାଷ୍ଟର ଅଛନ୍ତି କଳାହାଣ୍ଡି ଜିଲ୍ଲାର ଜୁନାଗଡ ବ୍ଲକ୍‌ରେ । ଅନ୍ତର୍ଯାମୀ ହାଇସ୍କୁଲରେ । ବିଷୟ ପଢାନ୍ତି ଇତିହାସ ହାଇସ୍କୁଲ୍ ପିଲାଙ୍କୁ । ବୟସ ବେଶି ନୁହେଁ, ବୟାଳିଶି ଭିତରେ । ସର୍ଟରେ ନିଆଲ୍ ମାଷ୍ଟ୍ରେ ହିଷ୍ଟ୍ରି । ଅତି ସର୍ଟରେ ଏନ୍‌ଏଚ୍-୪୨ । ଦ୍ୱିତୀୟ ପାନିପଥ ଯୁଦ୍ଧଠାରୁ ଆରମ୍ଭ କରି ହଳଦିଘାଟ, ଭର୍ସାଇ ସନ୍ଧି, ଦ୍ୱିତୀୟ ବିଶ୍ୱଯୁଦ୍ଧ, କେଉଁ ମସିହାରେ ଜାପାନ୍‌ର ହିରୋସୀମା, ନାଗାସାକି ଉପରେ ପରମାଣୁ ବୋମା ପଡିବା ପର୍ଯ୍ୟନ୍ତ ସବୁ ମୁହଁରେ ନିଆଲ୍ ମାଷ୍ଟରଙ୍କ । ଅନ୍ତର୍ଯାମୀ ହାଇସ୍କୁଲରେ ଆଜି ପର୍ଯ୍ୟନ୍ତ କେହି ପିଲା ଇତିହାସରେ ଫେଲ୍ ହୋଇନାହାନ୍ତି ବୋଲି ସବୁବେଳେ ହଲପ କରି କହନ୍ତି ମାଷ୍ଟ୍ରେ । କିନ୍ତୁ ନିଜ ପୁଅଟା ବରାବର ଫେଲ୍ ହଉଛି ଇତିହାସରେ ଯେଉଁଥିପାଇଁ କି ନିଆଲ୍ ମାଷ୍ଟ୍ରେ ବେଶି ଦୁଃଖ କରେ ।

ଏତେ ସୁନ୍ଦର ନିଦଟା କ'ଣ ପାଇଁ ଭାଙ୍ଗିଗଲା ନିଆଲ୍ ମାଷ୍ଟ୍ରେ ତାର କାରଣ ଖୋଜିବାରେ ଲାଗିଲେ । କାରଣ ଖୋଜୁଖୋଜୁ ଭୁଟୁଭୁଟୁ ହେଉଥିବା ଲୋକଙ୍କ ଉପରେ ତାଙ୍କର ନଜର ପଡିଲା । ଏତେଗୁଡା ଲୋକ ସେଠି କ'ଣ କରୁଛନ୍ତି । ନିଆଲ୍ ମାଷ୍ଟ୍ରେ ଯାଇ ଦେଖିଲା ବେଳକୁ ସେ ସବୁ ହାରାମୀଗୁଡା ଗୋଟାଗୋଟା ଶକ୍ତ ଭିକାରୀ । ତେବେ ସେଠି ସେମାନେ କ'ଣ କରୁଛନ୍ତି? ପୁଣି ଏତେ ସଂଖ୍ୟାରେ? ସେଇଟା କ'ଣ ଭିକାରୀମାନଙ୍କ ଆସୋସିଏସନ୍ ହଲ୍? ସେହି ଭିକାରୀଙ୍କ ମଧ୍ୟରୁ କିଏ ବୁଜୁଳା ସଜଉଛି ତ କିଏ କିଏ ଚିଡା ଚଇତନ କାଟୁଛି । ପୁଣି କିଏ ସାଇକେଲରେ ପମ୍ପ୍ ଅଛିକି ନାହିଁ ଦେଖି ନଉଛି । କାରଣ ସେଥିରେ କିଛି ସାଇକେଲ ଚଢା ଭିକାରୀ ଥିବାର ନିଆଲ୍ ମାଷ୍ଟ୍ରେ ଅନୁମାନ କରୁଥିଲେ । ଆଉ କିଏ ପର୍ଶୁରାମ ବେଶ ହେଉଛି ତ କିଏ ହନୁମାନ । ଶଳା, ଭିକାରୀଗୁଡା!

ସିନ୍ଦୁରା ଫାଟୁଥାଏ । ଭୋଅରୁ ଭୋଅରୁ ଟିକେଟିକେ ଶୀତ ବି ଲାଗୁଥାଏ । ପାଖ ଜଳଖିଆ ଦୋକାନରେ ପ୍ଲେଟ୍ ଧୁଆ ପିଲାଟା ଟଂଟାଂ ଶବ୍ଦ କରି ବାସନକୁସନ ଧୋଉଛି । କାଲି ରାତିରେ ନିଆଲ୍ ମାଷ୍ଟ୍ରେ ବୁଲିବୁଲି କ୍ଲାନ୍ତ ହୋଇ ପଡିଥିବାରୁ ସେ କେଉଁଠି ବି ଶୋଇ ପଡିଥିଲେ ସେଥିପ୍ରତି ଦୃଷ୍ଟି ନଥିଲା । ସହରେ ନୂଆ ଜାଗା । ପଞ୍ଚାମୁଣ୍ଡାଇ । ପୂରୀରୁ ପଞ୍ଚାମୁଣ୍ଡାଇ ନାଟକ ଶୁଣି ପଞ୍ଚାମୁଣ୍ଡାଇ ସମ୍ପର୍କରେ ନିଆଲ୍ ମାଷ୍ଟରଙ୍କ ଯାହା ଯେତିକି ଧାରଣା ଥିଲା ।

ପୁଅଟା ଆଉଥରେ ପରୀକ୍ଷା ନ ଦିଏ ନା ସେ ପଞ୍ଚାମୁଣ୍ଡାଇ ନ ଆସନ୍ତି । ଦୁଇଦୁଇ ଥର



Digitized by srujanika@gmail.com

ଫେଲ୍ ହେଲାଣି । ସବୁଥରକ ସେଇ ପର୍ଟିକୁଲାର ଇତିହାସ ସବ୍‌ଜେକ୍ଟରେ ଫେଲ୍ ହଉଛି । ପଟ୍ଟାମୁଣ୍ଡାଇରେ ପଡିଛି ଇତିହାସ ଖାତା । ଏଥର କିନ୍ତୁ ତାକୁ ଯେମିତି ହେଉ ପାସ୍ କରାଇବାକୁ ହେବ । ଗୋଟିଏ କର୍ତ୍ତବ୍ୟନିଷ୍ଠ ବାପାର ଦାୟିତ୍ୱ ନେଇ ନିଆଲ୍ ମାଷ୍ଟ୍ର ଆସିଛନ୍ତି ପଟ୍ଟାମୁଣ୍ଡାଇ । ଜୁନାଗଡରୁ ପଟ୍ଟାମୁଣ୍ଡାଇ । ଇତିହାସରେ ପିଲାଟା ଫେଲ୍ ହେଉଛି, ଏକଥା କାହା ଆଗେ ବି କହିପାରୁନାହାନ୍ତି ନିଆଲ୍ ମାଷ୍ଟ୍ର ।

ବାପା ଇତିହାସରେ ଜିଆଣ୍ଟ, ଦେଖିଲା ବେଳକୁ ପୁଅ ସେହି ସବ୍‌ଜେକ୍ଟଟାରେ ସାଂଘାତିକ୍ ପୋଅର୍ । କି କଣ୍ଟ୍ରାଡିକ୍ସନ୍!

ପଟ୍ଟାମୁଣ୍ଡାଇ ଏସ୍.ଏନ୍ ହାଇସ୍କୁଲରେ ପଡିଛି ଇତିହାସ ଖାତା ପୁଅର । ବାପା ଇତିହାସ ମାଷ୍ଟର । ପୁଅ ଖାତା କାମ ପାଇଁ ଆସିଛନ୍ତି ଜୁନାଗଡରୁ ପଟ୍ଟାମୁଣ୍ଡାଇ । ନୂଆ ଜାଗାକୁ ।

ନିଆଲ୍ ମାଷ୍ଟ୍ର ପାଇଁ ଏହି କାର୍ଯ୍ୟଟା ସମ୍ପୂର୍ଣ୍ଣ ନୂତନ ଓ ଖାପଛଡା । ଯାହାବି ହେଉ ପୁଅ ପାଇଁ ବାପାର ଦାୟିତ୍ୱର ପ୍ରଶ୍ନ ।

ବ୍ଲକ୍ ଚେୟାରମ୍ୟାନ୍ ବେହେରା ବାବୁଙ୍କ ରିଲେସନ୍ ଭାଇ ରହନ୍ତି ପଟ୍ଟାମୁଣ୍ଡାଇ ଟାଉନ୍ ପାଖ ପୋଖରିଆପଡା ତୃତୀୟ ଗଳିରେ । ଖାତା କାମରେ ସେ ପୂରା ପୋକ ଏବଂ ପୁଅ ଏଥର ପାସ୍ କଲା ଜାଣ ବୋଲି ବେହେରା ବାବୁ ପ୍ରତିଶ୍ରୁତି ଦେବା ପରେ ନିଆଲ୍ ମାଷ୍ଟ୍ରର ଛାତି ଟିକେ ହାଲ୍‌କା ହୋଇଛି । ଛୋଟଛୋଟ ନିଶ୍ୱାସ ପ୍ରଶ୍ୱାସ ନେଉଛନ୍ତି ।

ବେହେରା ବାବୁ ଏକ ଚିଠି ଲେଖି ନିଆଲ୍ ମାଷ୍ଟ୍ରଙ୍କୁ ଦେଇ କହିଲେ ଭବାନୀପାଟଣାରୁ ସିଧା ବସ୍ ଭୁବନେଶ୍ୱର । ଭୁବନେଶ୍ୱରରୁ କଟକ ଓ ସେଠୁ ସିଧା ପଟ୍ଟାମୁଣ୍ଡାଇ । ପଟ୍ଟାମୁଣ୍ଡାଇରୁ ଓହ୍ଲାଇବା ପରେ ଅଳ୍ପ କିଛି ବାଟ ରିକ୍ସା କରି କିମ୍ବା ଚାଲିଚାଲି ଗଲେ ଏସ୍.ଏନ୍ ହାଇସ୍କୁଲ ପଡିବ । ସ୍କୁଲର ଖୁବ୍ ନିକଟରେ ପୋଖରିଆ ପଡା । ସେଇଠି ରହନ୍ତି ତାଙ୍କ ରିଲେସନ୍ ଭାଇ ଭୋପାଳ ବେହେରା । ଭୋପାଳ ବାବୁ କହିଲା ମାନେ ପଟ୍ଟାମୁଣ୍ଡାରେ ସମସ୍ତେ ଚିହ୍ନନ୍ତି । ଟାଉନ୍ ଉପରେ ତାଙ୍କର ଧାକ୍ । ମୋଟା ହେଇ ଡେଙ୍ଗା । ଆଗ ବାଳ ଚନ୍ଦା । ଭୋପାଳ ବାବୁ ।

ନିଆଲ୍ ମାଷ୍ଟ୍ର ପଟ୍ଟାମୁଣ୍ଡାଇ ଉପରେ ଓହ୍ଲାଇ ପଡିବା ବେଳକୁ ଦିନ ଏଗାର । ଖାତା ଦେଖା ଘଣ୍ଟାଏ ହେଲା ଆରମ୍ଭ ହୋଇଗଲାଣି । ବେସ୍ତ ହୋଇ ପଡି ଏକ ରିକ୍ସାରେ ବସି ପଡିଲେ ନିଆଲ୍ ମାଷ୍ଟ୍ର । ରିକ୍ସା ଚାଳକକୁ କହିଲେ: ଚଲା ଏସ୍.ଏନ୍ ହାଇସ୍କୁଲକୁ ।

ଏସ୍.ଏନ୍ ହାଇସ୍କୁଲରେ ପହଞ୍ଚିଗଲା ପରେ ସେଠାରେ ଏକ ଜଳଖିଆ ଦୋକାନୀ ସହିତ ପରିଚୟ ହେଲା । ଇଚ୍ଛା ନଥିଲେ ବି ଛେନାପୋଡ ଶହେ ଗ୍ରାମ୍ ଖାଇଲେ ନିଆଲ୍ ମାଷ୍ଟ୍ର। ଗ୍ଲାସେ ପାଣି ପିଇଲେ । ପକେଟ୍‌ରୁ ଏକ ଦଶ ଟଙ୍କିଆ ନୋଟ୍ ବାହାର କରୁକରୁ ନିଆଲ୍ ମାଷ୍ଟ୍ର ଦୋକାନୀକୁ



Digitized by srujanika@gmail.com

ପୋଖରିଆପଡା ଭୋପାଳ ବେହେରାଙ୍କ ଆଡ୍ରେସ୍ ଦେଖାଇଲେ ।

ଦୋକାନୀଟି ମାଷ୍ଟ୍ରଙ୍କୁ ଭୋପାଳ ବେହେରାର ଘର ବତେଇଲା । ସିଧା ଯାଇ ବାଁକୁ ଯିବ ଏବଂ ସେଠାରୁ କିଛି ବାଟ ଗଲା ପରେ ଏକ ନଳକୂପ ପଡିବ । ସେଠୁ ଠିକ୍ ଚାରିପାଞ୍ଚ ହାତ ଦୂରରେ ଭୋପାଳ ବାବୁଙ୍କ ଘର । ତାଙ୍କ ଘର ଆଗରେ ଗୋଟିଏ କି ଦୁଇଟି ଟ୍ରାକ୍ଟର ଥିବ ମଧ୍ୟ ।

ଭୋପାଳ ବାବୁଙ୍କ ଘର ନିକଟରେ ପହଞ୍ଚି ନିଆଲ ମାଷ୍ଟ୍ର କବାଟ ଠକଠକ କଲାବେଳକୁ ଘର ଭିତରୁ ଏକ ଗୋରୀ ଓ ପତଳୀ ସ୍ତ୍ରୀ ଲୋକଟା ବାହାରି ଆସି କହିଲା: ସେ ନାହାନ୍ତି । କାଲିଠାରୁ ଯାଇଛନ୍ତି ଭୁବନେଶ୍ୱର । ମନ୍ତ୍ରୀଙ୍କୁ ଦେଖା କରିବେ । ସେକ୍ରେଟେରିଏଟ୍‌ରେ ବି କାମ ସାରି ଫେରିବେ ଆସନ୍ତାକାଲି । ବୋଧେ ସେଇ ଗୋରୀ ଓ ପତଳୀ ସ୍ତ୍ରୀ ଲୋକଟା ଭୋପାଳ ବାବୁଙ୍କ ଧର୍ମ ପତ୍ନୀ ଥିଲା ନା କ'ଣ ଭାବୁଥିଲେ ନିଆଲ୍ ମାଷ୍ଟ୍ର । ସ୍ତ୍ରୀଟା ଏତେ ଚତୁରୀ ତେବେ ସ୍ୱାମୀ କେତେ ଚତୁର ହୋଇ ନଥିବେ ମାଷ୍ଟ୍ର ଭାବୁଥିଲେ ।

ଭୋପାଳ ବାବୁ ନାହାନ୍ତି । ବିଚରା ମାଷ୍ଟ୍ରଟାର ମନ ଖଟା ହୋଇଗଲା । ଏତେ ବାଟରୁ ଆସିଛନ୍ତି ପଇସା ଖର୍ଚ୍ଚ କରି, ପୁଣି କାମ ହୋଇ ପାରିବନି । ଫେରିଯିବେ । ମନ ପୂରା ଦୁଃଖ ହୋଇଗଲା ମାଷ୍ଟ୍ରଙ୍କର । ସେ କ'ଣ କରିବେ କିଛି ଚିନ୍ତା କରି ପାରିଲେନି । ଫେରିଗଲେ କାମ ହୋଇ ପାରିବନି । ଏ ସମ୍ପର୍କରେ କିଛି ସମୟ ଚିନ୍ତା କଲା ପରେ ହଠାତ୍ ଏକ ଆଇଡିଆ ତାଙ୍କ ମୁଣ୍ଡକୁ ଢୁକିଲା । ସେ ପୁଣି ଗଲେ ସେଇ ଜଳଖିଆ ଦୋକାନୀ ପାଖକୁ । ଜଳଖିଆ ଦୋକାନୀକୁ ସମସ୍ତ କଥା କହିଲେ । ଜଳଖିଆ ଦୋକାନୀ ତାଙ୍କୁ ଏସ୍.ଏନ୍ ହାଇସ୍କୁଲର ମହାନ୍ତି ମାଷ୍ଟରଙ୍କ ଠିକଣା ଦେଇ କହିଲେ ତାଙ୍କୁ ଭେଟିବାକୁ । ମହାନ୍ତି ବାବୁଙ୍କ ପାଖକୁ ଗଲେ ତମ ପୁଅ ଆଜ୍ଞା ପାଶ୍ କଲା ଜାଣ ବୋଲି ଦୋକାନୀ ପ୍ରତିଶ୍ରୁତି ଦେଲା ପରେ ପୁଣି ଆଉଥରେ ମାଷ୍ଟ୍ରର ଛାତି ହାଲ୍‌କା ହୋଇଗଲା । ସେ ପୁଣି ଛୋଟଛୋଟ ନିଶ୍ୱାସ ପ୍ରଶ୍ୱାସ ନେବାକୁ ଆରମ୍ଭ କଲେ । ଆଶ୍ୱସ୍ତ ହେଲେ ।

ପୁଣି ଯାତ୍ରାରମ୍ଭ କଲେ ଏସ୍.ଏନ୍ ହାଇସ୍କୁଲକୁ । ସେଠାରେ ପତ୍ତା ଲଗାଇବା ପରେ ମହାନ୍ତି ସାର୍‌ଙ୍କୁ ପାଇଗଲେ । ତାଙ୍କୁ ସମସ୍ତ ଅସୁବିଧା କଥା କହିଲେ । ଆଜି ଦିନର ଘଟଣା ସମ୍ପର୍କରେ ମଧ୍ୟ ଅବଗତ କରାଇଲେ ।

ମହାନ୍ତି ସାର୍ ସବୁ କଥା ଶୁଣିବା ପରେ କହିଲେ ଏଇ ଗୋଟା କଥା. ଆପଣ ଏତେ ବେସ୍ତ ହେଉଛନ୍ତି । ତୁଛାଟାରେ ଆପଣ ଭୋପାଳ ବାବୁଙ୍କୁ ଖୋଜୁଛନ୍ତି । ଆପଣଙ୍କ ପୁଅ ପାସ୍ ହେଲା ବୋଲି ଏବେଠୁ ନିଷ୍ଚିତରେ ବୁଝନ୍ତୁ । ନିଆଲ୍ ମାଷ୍ଟ୍ର ମୁଣାରୁ ସାତ ଶହ ଟଙ୍କା (ସାତଟା ଶହେ ଟଙ୍କିଆ ନୋଟ୍) ବାହାର କରି ମହାନ୍ତି ସାର୍‌ଙ୍କୁ ଦେଲେ । ମହାନ୍ତି ସାର୍ ପୁଣି ଦୋହରାଇ କହିଲେ. ଆଉ ବେସ୍ତ ହୁଅନ୍ତୁ ନାହିଁ, ଆପଣଙ୍କ ପୁଅର ପାସ୍ ଦାୟିତ୍ୱ ମୋର । ଏଣିକି ଆପଣ ନିଷ୍ଚିତରେ



Digitized by srujanika@gmail.com

ଫେରି ଯାଆନ୍ତୁ । ମହାନ୍ତି ସାର୍‌ଙ୍କଠାରୁ ଏହି ପ୍ରତିଶ୍ରୁତି ଶୁଣି ସାରିବା ପରେ ପୁଣି ଥରେ ନିଆଲ୍ ମାଷ୍ଟ୍ରଙ୍କ ଛାତି ହାଲ୍‌କା ହୋଇଗଲା । ଦୁଇ ତାରିଥର ଛୋଟଛୋଟ ନିଶ୍ୱାସ ପ୍ରଶ୍ୱାସ ନେଲେ । କୁଛେଇ କୁଛେଇ ହସିଲେ । ପୁଅଟା ଏଥର ଉଠିଯିବ ବୋଲି ଚିନ୍ତା କରି ଆଶ୍ୱସ୍ତ ହେଲେ ।

ସେତେବେଳକୁ ସନ୍ଧ୍ୟା ପ୍ରାୟ ହୋଇ ଯାଇଥାଏ । ପଟ୍ଟାମୁଣ୍ଡାଇରୁ ଆଉ ବସ୍ ନଥାଏ କି ଟ୍ରେକର୍ ନଥାଏ । ଅନ୍ତତଃ କେନ୍ଦ୍ରାପଡା ପଳେଇଗଲେ ସେଠାରୁ କଟକ ଗାଡି ମିଳିଯାଇପାରେ । କିମ୍ବା ତିନିମୁହାଣୀରେ ତାଙ୍କ ପତ୍ନୀଙ୍କ ପିଉସୀ ଘରେ ରହିଯାଇହେବ । କ'ଣ କରିବେ । ଗୋଟେ ହେଲେ ଗାଡି ନାହିଁ ।

ନିଆଲ୍ ମାଷ୍ଟ୍ର ପୁଣି ସେହି ଜଳଖିଆ ଦୋକାନୀ ପାଖକୁ ଗଲେ । ଜଳଖିଆ ଦୋକାନୀ ନିଆଲ୍ ମାଷ୍ଟ୍ରଙ୍କୁ ଦେଖି କହିଲା: କ'ଣ ହେଲା? କାମ ହେଲା କି ନାହିଁ ।

ନିଆଲ୍ ମାଷ୍ଟ୍ର କହିଲେ: ମହାନ୍ତି ସାର୍ ତ ପୂର୍ଣ୍ଣ ପ୍ରତିଶ୍ରୁତି ଦେଇଛନ୍ତି । ଦେଖାଯାଉ କ'ଣ କରୁଛନ୍ତି ।

ଜଳଖିଆ ଦୋକାନୀ କହିଲା: ନା, ନା, ସାର୍ । ମହାନ୍ତି ସାର୍‌ଙ୍କ କଥା ଯାହା କାମ ତାହା । ମହାନ୍ତି ସାର୍ କହିଛନ୍ତି ମାନେ ତମ ପୁଅ ପାସ୍ କଲା ବୋଲି ଜାଣ ।

ଜଳଖିଆ ଦୋକାନୀର ଏହି କଥା ଶୁଣି ପୁଣି ନିଆଲ୍ ମାଷ୍ଟ୍ରର ଛାତି ହାଲ୍‌କା ହୋଇଗଲା । ସେ ଛୋଟଛୋଟ ନିଶ୍ୱାସ ପ୍ରଶ୍ୱାସ ନେଲେ । ଆଶ୍ୱସ୍ତ ହେଲେ । କିନ୍ତୁ ଏହା ମଧ୍ୟରେ ମାଷ୍ଟ୍ର ସନ୍ଧ୍ୟା ହୋଇଯିବା କଥା ଭୁଲିଯାଇଥିଲେ ।

ଜଳଖିଆ ଦୋକାନୀ କହିଲା: ଆଜ୍ଞା ଆଉ ଗାଡି ମିଳିବନି । ଆପଣ ଏଇଠି କୋଉଠି ଦେଖି ରହିଯାଆନ୍ତୁ । ତାଙ୍କୁ ବ୍ଲକ୍ ଡାକବଙ୍ଗଳାରେ ରହିବାକୁ ଜଳଖିଆ ଦୋକାନୀ କହିଲା ।

ନିଆଲ୍ ମାଷ୍ଟ୍ର ଜଳଖିଆ ଦୋକାନରୁ ବରା, ସିଙ୍ଗଡା ଖାଇ ପେଟେ ପାଣି ପିଇଦେଲେ ଏବଂ ରାତିରେ ଆଉ ନ ଖାଇଲେ ଚଳିବ ବୋଲି ମନେମନେ ଭାବିଲେ । ସିଗାରେଟ୍ ଖଣ୍ଡେ ଲଗେଇଲେ ଏବଂ ଗଲେ ଡାକବଙ୍ଗଳା ଆଡେ । ସେଠି ଯାଇ ଦେଖିଲାବେଳକୁ କିଏ ଗୋଟା ନେତା ଆସିଛି ସେଠାରେ ଲୋକ ଜାମ୍ । ସେଠି ଆଉ ତାଙ୍କୁ ସ୍ଥାନ ନ ମିଳିବା ନେଇ ମାଷ୍ଟ୍ର ଏକ ରକମ ନିଶ୍ଚିତ ହୋଇଯିବା ପରେ ପୁଣି ଫେରିଲେ ସେଇ ଜଳଖିଆ ଦୋକାନକୁ । ଡାକ ବଙ୍ଗଳା ନ ହେବାରୁ ଜଳଖିଆ ଦୋକାନୀ ତାଙ୍କୁ ଜୟ ହନୁମାନ ମଠ ହିଁ ଶେଷ ଆଶ୍ରା ବୋଲି କହିଲେ ।

ଜଳଖିଆ ଦୋକାନର ଜଷ୍ଟ୍ ପଛ ହେଉଛି ଜୟ ହନୁମାନ ମଠ । ସେଠି ଫ୍ରିରେ ରାତିରେ ରହିହେବ । ନିଆଲ୍ ମାଷ୍ଟ୍ର ଭାବିଲେ ମାଗଣାରେ ରାତିଟା କଟିଗଲେ ଶହେ ଟଙ୍କା ବି ବଞ୍ଚିଯିବ । ପ୍ରସ୍ତାବ ମନ୍ଦ ନୁହଁ । ତେଣୁ ଚାଲିଲେ ଜୟ ହନୁମାନ ମଠ ।



Digitized by srujanika@gmail.com

ମହନ୍ତ ବାବା ବସି ଧୂମ ପାନ କରୁଥିଲେ ।

ବାବାଙ୍କୁ ପ୍ରଣାମ କରି ନିଜର ଅସୁବିଧା ଜଣାଇଲେ ନିଆଲ୍ ମାଷ୍ଟ୍ର । ବାବା କହିଲେ ବେସ୍ତ କିଆଁ ହେଉଛ, ଏଠାରେ ତମେ ଆରାମରେ ରାତିରେ ରହିପାରିବ ।

ଜଣେ ଚେଲା ଆସି ଗୋଟିଏ ବଡ ଲମ୍ବା ହଲ୍ ଦେଖାଇ ଦେଲା । ହଲ୍‌ଟି କିଛି ମନ୍ଦ ନଥିଲା । ହଲ୍‌ଟିରେ ବି ଗୋଟିଏ ଦୁଇଟି ବିଦ୍ୟୁତ୍ ବଲ୍‌ବ ଜଳୁଥିଲା । ଦୁଇଟି ପ୍ଲାଷ୍ଟିକ୍ ଛପା ମଧ୍ୟ ଥିଲା । ବୋଧେ ହଲ୍‌ଟି ପ୍ରବଚନ ଫ୍ରବଚନ ପାଇଁ କି କ'ଣ ଭାବିଭାବି ଦେହରୁ ସାର୍ଟଟା ଖୋଲି ଛପା ପକାଇ ଆରାମରେ ଶୋଇଗଲେ ନିଆଲ୍ ମାଷ୍ଟ୍ର । ତା ପରେ ତାଙ୍କ ମୁଣ୍ଡ ଉପରେ ଜଳୁଥିବା ବଲ୍‌ବଟିକୁ ଲିଭାଇ ଦେଲେ ।

ଦିନ ସାରା ଧାଁଧପଡ କରି ହାଲିଆ ହୋଇ ପଡିଥିବାରୁ ନିଦଟା ଖୁବ୍ ଶୀଘ୍ର କବ୍‌ଜା କରିନେଲା ନିଆଲ୍ ମାଷ୍ଟ୍ରକୁ ।

କିନ୍ତୁ ପାହାନ୍ତା ପହରଠାରୁ ନିଦ ଭାଙ୍ଗିଯିବା ପରେ ଅସଲ ଟ୍ରାଜେଡିଟା ଆରମ୍ଭ ହୋଇଗଲା ନିଆଲ୍ ମାଷ୍ଟ୍ରର। ଆଖି ଖୋଲିଲା ପରଠାରୁ ସେଠାରେ ଖୁବ୍ ଗୋଟା ଗୋଳମାଳ ଓ ଭୁଟୁଭୁଟୁ ଶବ୍ଦ । ତାଙ୍କ ପାଖକୁ ଲାଗିଲାଗି ପ୍ରାୟ ଶହେ ଖଣ୍ଡେ ଲୋକ ଶୋଇଛନ୍ତି । ଆଉ କେତେ ଉଠି ନିତ୍ୟକର୍ମରେ ଲାଗି ପଡିଛନ୍ତି । କଥା କ'ଣ ବୁଝୁବୁଝୁ ସେ ଶଳା ସବୁଗୁଡା ପୁଣି ଭିକାରୀ । ସେଠି ସବୁଦିନ ସେମାନେ ରାତିରେ ଶୁଅନ୍ତି । ସକାଳ ହେଲେ ଯେଝା ଯେଝାର ଏରିଆ ଟୁର୍ କରନ୍ତି ଓ ଭିକ ମାଗନ୍ତି । କିଏ କୁଷ୍ଠ ରୋଗରେ ଛିଣ୍ଡି ଯାଇଥିବା ହାତରେ କପଡା ଗୁଡାଉଛି ତ କିଏ ଚିତା ଚଇତନ କାଟୁଛି । ପୁଣି କିଏ ପର୍ଶୁରାମ ବେଶ ହେଉଛି ତ କିଏ ଚକୁଳିଆ ପଣ୍ଡା । ସେଠି ପ୍ରାୟ ପଚାଶରୁ ଊର୍ଦ୍ଧ୍ୱ କୁଷ୍ଠ ରୋଗୀ ମଧ୍ୟ ଶୋଇଥିଲେ । ବିଚରା ନିଆଲ୍ ମାଷ୍ଟ୍ର ଏହିଭଳି ଏକ ସ୍ଥାନରୁ ନିଜକୁ ଆବିଷ୍କାର କରିବା ପରେ ପଶ୍ଚାତାପ ହିଁ କରୁଥିଲେ । କିନ୍ତୁ ଆଉ କିଛି ଘଟଣା ଘଟିବାକୁ ନଥିଲା । ସବୁକିଛି ଘଟି ସାରିଥିଲା । ଶଳା ସେ କୁଷ୍ଠ ରୋଗୀ, ଭିକାରୀଙ୍କ ମେଳରେ ଗଲା କାଲି ରାତିଟା ଶୋଇଥିଲେ! ଭାବିଭାବି ବେଶ୍ ଦୁଃଖ କଲେ ନିଆଲ୍ ମାଷ୍ଟ୍ର ।

ସକାଳ ହେଲା । ମାଷ୍ଟ୍ରକୁ ଲକ୍ଷ୍ୟ କରି ସେମାନଙ୍କ ଭିତରୁ କିଏ ଗୋଟା କହିଲା: ଏ ଭିକାରୀ ଜଣକ ଆଜି ନୂଆ ଆସିଛି ବୋଧେ ।

ଆଉ ଜଣେ କହିଲା: ହେଇଥିବ ।

ପୂରା ସକାଳ ହୋଇଯିବାରୁ ଖରା ପଡି ଯାଇଥିଲା । ଏହା ସହିତ ମାଷ୍ଟ୍ରର ଟ୍ରାଜେଡିଟା ବି ଅଧିକ ବଢି ଯାଇଥିଲା । ଅସଲ ପ୍ରୋବ୍ଲେମ୍ ହେଲା ଝାଡା ଯିବେ କେଉଁଠିକୁ । ସକାଳ ହୋଇଗଲାଣି । ସବୁଆଡେ ଲୋକବାକ ଚଳପ୍ରଚଳ କଲେଣି । ଝାଡା ଯିବାଟା ତାଙ୍କ ପାଇଁ ମହା ସମସ୍ୟା ହୋଇ ଠିଆ



Digitized by srujanika@gmail.com

ହେଲା । ଏମିତି ଚାଲିଚାଲି ଯାଇ ଏକ କେନାଲ ବନ୍ଧ ନିକଟରେ ପହଞ୍ଚିଲେ । କିନ୍ତୁ ସେଠି ବି ସମସ୍ୟା । ଶହଶହ ସଂଖ୍ୟାରେ ଲୋକମାନେ ଲମ୍ବା ଲାଇନ୍ କରି ଝାଡା ବସିଛନ୍ତି । କ'ଣ କରିବେ, ତାଙ୍କୁ ବି ଖରାପ ଲାଗୁଛି । ପ୍ୟାଣ୍ଟ, ସାର୍ଟ ପିନ୍ଧା ଲୋକଟାକୁ ସମସ୍ତେ ଅନଉଛନ୍ତି । ବଡ ଖରାପ ଲାଗୁଛି ମାଷ୍ଟ୍ରଙ୍କୁ । ଏକ ହରିବଲ୍ ସିଚୁଏସନ୍ । କଷ୍ଟରେ ଝାଡା ବସିଲେ ।

ସେଠୁ ସିଧା ଆସିଲେ ସେଇ ଜଳଖିଆ ଦୋକାନକୁ । ଚା ପିଇଲେ । ସିଗାରେଟ୍ ଖଣ୍ଡେ ଧରିଲେ । ଯାହା ହେଉ ଠିକ୍ ସେହି ସମୟରେ ପଟ୍ଟାମୁଣ୍ଡାଇରୁ ସିଧା କଟକ ବସ୍ ଲାଗିଥିଲା । ଆଉ ଡେରି ନକରି ମାଷ୍ଟ୍ର ବସ୍‌ରେ ବସିଲେ । ବସ୍ ଯାତ୍ରା ଷ୍ଟାର୍ଟ କଲା । ବସ୍‌ରେ ବସିଥିବାବେଳେ ସେ ପୂର୍ବର ସମସ୍ତ ଘଟଣାବଳୀକୁ ପୁଣି ସମୀକ୍ଷା କରିବାକୁ ଲାଗିଲେ । ପ୍ରକୃତରେ କି ହରିବୁଲ୍ ଏକ୍ସପେରିଏନ୍‌ସ!

ରେଜଲଟ୍ ବାହାରିଲା । ପୁଅ ପୁଣି ଫେଲ୍ । ସେଇ ଇତିହାସ ସବ୍‌ଜେକ୍ଟରେ ।

ଗୋଟିଏ ହେଲ୍‌ଦି ଦୀର୍ଘ ଶ୍ୱାସ ମାଷ୍ଟ୍ରର ଛାତି ବାଟ ଦେଇ ଯାଉଥିଲା ବେଳେ ପଟ୍ଟାମୁଣ୍ଡାଇର ସେଇ ହରିବୁଲ୍ ଏକ୍ସପେରିଏନ୍‌ସ ମନରେ ପୁଣି ଉଦ୍‌ଜୀବିତ ହେଉଥିଲା ।

□



Digitized by srujanika@gmail.com

# ଏକ
# ସୁପରିକଳ୍ପିତ
# ହତ୍ୟାକାଣ୍ଡର
# ନକ୍‌ସା





Digitized by srujanika@gmail.com

**ନୀ**ତୁର ମୁଣ୍ଡ ଅସମ୍ଭବ ଭାବେ ବିନ୍ଧୁଛି । ରକ୍ତ ସଞ୍ଚାଳନ ବନ୍ଦ ହୋଇ ଯାଉଛି । ଦେହ ଭିତର ଶୀତେଇ ଉଠୁଛି । ଛାତି ତଳ କୋରି ହେଉଛି । କଙ୍କାଳ ରୁଗୁରୁଗୁ ହେଉଛି । ଦେହ ଓ ମନ ଉଭୟ ଅସୁସ୍ଥ ହେଲାବେଳେ ଯାହାସବୁ ହେବା କଥା ତାହାହିଁ ଘଟୁଛି ନୀତୁର ।

ଏମିତି ତ କେବେ ହୁଏନି । ତେବେ ଆଜି ଏସବୁ କାଣ୍ଡ କାହିଁକି ଘଟୁଛି ତାହା ନୀତୁକୁ ଅଧିକରୁ ଅଧିକ ବେପ୍ତ ଓ ବିବ୍ରତ କରୁଛି । ହଠାତ୍ କିଛି ଗୋଟା ଧ୍ୱଂସ କିମ୍ବା ସୃଷ୍ଟି କରି ପକାଇବାକୁ ନୀତୁର ଖୁବ୍ ଇଛା ହେଉଛି । କଣ ନାଇଁ କଣ କରିବସିବାକୁ ଇଛା ହେଉଛି ନୀତୁର ଆଜି ।

ସିଦ୍ଧାର୍ଥ ଓ ମିଲି ତାର ସବୁଠୁ ପ୍ରିୟ ସାଙ୍ଗ । ହଁ ତ ଏଥିନେଇ ଏତେ ଏକ୍ସପ୍ଲାନେସନ୍ କାହିଁକି? ମିଲି ବିନା ତାର ଜୀବନର ମାନେ କିଛି ନାହିଁ । ଗୋଟିଏ ହୃଦୟର ଅଳିନ୍ଦ ମିଲି ହେଲେ ସେ ହେଉଛି ନିଳୟ । ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ । ମିଲି ନ ଖାଇଲେ ନୀତୁର ପେଟ ଉପାସ ରହେ । ମିଲି ସହିତ ଦିନେ ଦେଖା ନହେଲେ ତାକୁ ଦୁନିଆ ଅନ୍ଧାର ଅନ୍ଧାର ମନେ ହୁଏ । ମିଲି ସହିତ ରାତିରେ ବିଛଣାରେ ନ ଶୋଇଲେ କିଛି ଗୋଟା ଅଧୁରା ଅଧୁରା ରହିଯାଏ । ସେଇଥିପାଇଁତ ପ୍ଲସ୍ ଥ୍ରୀ ଫାଷ୍ଟ ଇୟରରୁ ସେ ଦୁହେଁ ଗୋଟିଏ ରୁମ୍‌ରେ ହିଁ ରହି ଆସିଛନ୍ତି । ଦୁଇ ସଖୀ ନୀତୁ ଓ ମିଲି । ଦୁଇ ସଉତୁଣୀ! ଇସ୍...! ନା.. । ମିଲି ଭଳି ଏତେ ପ୍ରାଣର ସଖୀକୁ କେବେବି ସଉତୁଣୀ କରେଇ ନ ଦେବାକୁ ଉଦ୍ୟମ କରି କ୍ରମେ ନୀତୁ ଏକ ହାଲ୍‌କା ନିଶ୍ୱାସ ନେଉଛି ।

ଗତ ଦୁଇ ବର୍ଷ ଧରି ସେ ଦୁହେଁ ଦୁଇ ସଖୀ ଭଳି ହଷ୍ଟେଲରେ ଚଳି ଆସିଛନ୍ତି । ସନ୍ଧ୍ୟାରେ ସାଙ୍ଗ ହୋଇ ଚାର୍ଟ ଖାଇଛନ୍ତି । ଏବଂ ସକାଳେ ସାଙ୍ଗ ହୋଇ କେମେଷ୍ଟ୍ରି ଟ୍ୟୁସନ୍ ଯାଇଛନ୍ତି । ଏବଂ ସାଙ୍ଗ ହୋଇ ଜେନା ସାର୍‌ଙ୍କଠାରୁ ନୋଟ୍ ମାଗି ଆଣିଛନ୍ତି । ଏବଂ ସାଙ୍ଗ ହୋଇ କଲେଜ ପରିସର ମହାଦେବ ମନ୍ଦିରକୁ ଯାଇଛନ୍ତି । ଏବଂ ସାଙ୍ଗ ହୋଇ କଲେଜର ସୁନୀଲ, ପିଙ୍କୁ ଓ ଟେଙ୍ଗା ଅସ୍‌ଲମ୍ ସାଙ୍ଗରେ ଥଟାମଜା କରିଛନ୍ତି । ଏବଂ ସାଙ୍ଗ ହୋଇ କେମେଷ୍ଟ୍ରି ପ୍ରାକ୍ଟିକାଲ୍ କ୍ଲାସ୍‌ରେ ଡବଲ୍ ଟାଇଟ୍ରେସନ୍ ଟେଷ୍ଟ କରିଛନ୍ତି । ଏବଂ ସାଙ୍ଗ ହୋଇ ଜୁଲୋଜି ପ୍ରାକ୍ଟିକାଲରେ ଫ୍ରଗ୍ ଓ ଟୋଡ୍ ମଧ୍ୟରେ ତଫାତ୍ ବାଛିଛନ୍ତି । ଏବଂ ସାଙ୍ଗ ହୋଇ ବିଛଣାରେ ଶୋଇଛନ୍ତି । ଏବଂ ସାଙ୍ଗ ହୋଇ ସିଦ୍ଧାର୍ଥର ଚିଠି ପଢ଼ିଛନ୍ତି । ଏବଂ ସାଙ୍ଗ ହୋଇ ହସିଛନ୍ତି । ଏବଂ ସାଙ୍ଗ ହୋଇ କାନ୍ଦିଛନ୍ତି । ଯାହା ବି କରିଛନ୍ତି ସବୁ ସାଙ୍ଗ ହୋଇ କି କରିଛନ୍ତି । ପ୍ରେମ! ଇସ୍... । ସେଇଟା କ'ଣ ସାଙ୍ଗ ହୋଇ? ନା.. ନା...

ସିଦ୍ଧାର୍ଥକୁ ସାଙ୍ଗ ହୋଇ ଦୁହେଁ ପ୍ରେମ କରିପାରିବେ କି ନାହିଁ ବୋଲି ଭାବି ନୀତୁର ଛାତି ଥରି ଉଠିଛି । ଲୋମ ଟାଙ୍କୁରି ଉଠିଛି । ନା ମିଲି ନୀତୁର, ସିଦ୍ଧାର୍ଥ ନୁହେଁ । ସିଦ୍ଧାର୍ଥ ତ ମିଲିର । ନୀତୁ କେବଳ ସେମାନଙ୍କ ମଧ୍ୟରେ ଏକ ସଂଯୋଗକାରିଣୀ । ସଂଯୋଗକାରିଣୀ ନା ବିଚ୍ଛେଦକାରିଣୀ!



Digitized by srujanika@gmail.com

ହତ୍ୟାକାରିଣୀ! କାହାର ହତ୍ୟାକାରିଣୀ? ପ୍ରେମରା ଇସ୍... । ନୀତୁ କି ଖରାପ କଥା ଚିନ୍ତା କରୁଛି । କି କାଳ କଥା ପାଟିରେ ଧରୁଛି । ପୋଡାମୁହିଁକୁ ମରଣ କାହିଁକି ହୋଇ ଯାଉନି କେଜାଣି?

ତେବେ ଆଜି ସେ ଏମିତି କାହିଁକି ଅନୁଭବ କରୁଛି । କାହିଁକି ତା ମନରେ ଇନ୍‌ଫେରିଅରିଟି କମ୍ପ୍ଲେକ୍‌ସିଟି? ସେ ଆଜି ମିଲି ପ୍ରତି କାହିଁକି ଈର୍ଷାନ୍ୱିତ? ସିଦ୍ଧାର୍ଥ ପ୍ରତି ତାର କାହିଁକି ଦୁର୍ବଳତା । ସିଦ୍ଧାର୍ଥ ତ ମିଲିର ବୋଲି ସେ ଜାଣିଛି । ଏହି ମ୍ୟାଟରରେ ସାଙ୍ଗ ହୋଇ କ'ଣ କିଛି କରିହେବ ? ଚମକି ପଡିଛି ନୀତୁ । ତା ଛାତି ଧଡଧଡ ହୋଇପଡିଛି । ପଞ୍ଜରାରେ କାହାର ଶକ୍ତ ଆଘାତ ପାଇଛି । କାହାର ଏହି ଆଘାତ? ମିଲିର ନା ନିଜର? କିଏ ସେ ଆଘାତ? ସିଦ୍ଧାର୍ଥ! ଆଃ.. ସିଦ୍ଧାର୍ଥ.. । ସିଦ୍ଧାର୍ଥ ମିଲିର । ନା.. ନା.. ସିଦ୍ଧାର୍ଥ ନୀତୁରା ଇସ୍.. । ନା..ନା.. ।

କି ବାଜେ କଥା ଚିନ୍ତା କରୁଛି ନୀତୁ! ପୋଡାମୁହିଁଟାକୁ ମରଣ ହୋଇ ଯାଆନ୍ତା କି ସବୁ ଶେଷ ହୋଇ ଯାଆନ୍ତା । ଯେତକ ଅପଚିନ୍ତା କେବଳ ପୋଡାମୁହିଁଟା କରୁଛି ।

ସିଦ୍ଧାର୍ଥ ଓ ମିଲି ମଧ୍ୟରେ ପ୍ରେମ ସମ୍ପର୍କ ଅଧିକରୁ ଅଧିକ ମଜବୁତ୍ ହେବା ଦିଗରେ ଯେଉଁ କେତେ ଜଣଙ୍କର ଭୂମିକା ରହିଛି ସେଥିମଧ୍ୟରୁ ନୀତୁ ଅନ୍ୟତମ । ସେ ମିଲିର ଚିଠି ନେଇ ସିଦ୍ଧାର୍ଥ ପାଖକୁ ଯାଇଛି । ସିଦ୍ଧାର୍ଥଠାରୁ ଚିଠି ଆଣି ମିଲିକୁ ଦେଇଛି । ମିଲି ଓ ସେ ସାଥୀ ହୋଇ ସିଦ୍ଧାର୍ଥ ରୁମ୍‌କୁ ଯାଇଛନ୍ତି । ସିଦ୍ଧାର୍ଥ ଓ ମିଲି ଗପିବାବେଳେ ସେ ସେମାନଙ୍କୁ ଛାଡି ଦେଇ ବାହାରକୁ ବାହାନା କରି ଚାଲି ଆସିଛି ।

ସେମାନଙ୍କର ଅଧିକ ମିଳାମିଶା ନେଇ କ୍ରମେ ନୀତୁ ଖୁସି ହେବାକୁ ଆରମ୍ଭ କରିଛି । ସିଦ୍ଧାର୍ଥ ସାଙ୍ଗରେ ଗପିଗପି ମିଲି ହଷ୍ଟେଲକୁ ଫେରିଛି । ରାତିରେ ବେଡ୍‌ରେ ଶୋଇବା ବେଳେ ମିଲି ସିଦ୍ଧାର୍ଥ ସମ୍ପର୍କରେ କହିଲାବେଳେ ନୀତୁ ମିଲିକୁ ଅଧିକ ଉତ୍ସାହିତ କରିଛି ଏବଂ ନିଜେ ଉତ୍ସାହିତ ହୋଇଛି । ସିଦ୍ଧାର୍ଥକୁ ନେଇ ମିଲି ଦେଖିଛି ଅଯୁତ ଅଯୁତ ସ୍ୱପ୍ନ । ମିଲିକୁ ସେ ସିଦ୍ଧାର୍ଥ ସିଦ୍ଧାର୍ଥ ଚିଡେଇଛି । ରାତିରେ କିଛି ବି ନଖାଇ ମିଲି ଶୋଇ ପଡିଛି । ନୀତୁ ଖୁସି ହୋଇଛି । ଉତ୍ସାହିତ ହୋଇଛି ।

ଏହି ଉତ୍ସାହ ଓ ଖୁସି ନୀତୁର ଆତଙ୍କର କାରଣ ବୋଲି ଭାବି ପୁଣି ତାର ପଞ୍ଜରା ଥରି ଉଠିଛି । ମୁଣ୍ଡ ଝାଇଁ ଝାଇଁ କରିଛି । କ୍ରମଶଃ ନିଶାସକ୍ତ ହୋଇପଡୁଥିବା ନୀତୁ ଏବେ କିଛି ଗୋଟା ଅଘଟଣ ଘଟାଇ ଦେବାକୁ ତତ୍ପର ହୋଇ ଉଠୁଛି ।

କ୍ରମେ ମିଲିର ଅଧିକ ଖୁସିକୁ ନୀତୁ ଲକ୍ଷ୍ୟ କରୁଛି । ମିଲିର ଏ ଅସମ୍ଭବ ଖୁସି ଯେ ନୀତୁକୁ କେବେ ଆଘାତ ଦେବ ଭାବି ନୀତୁ ଭୟଭୀତ ହୋଇ ପଡୁଛି । ମିଲି ପ୍ରେମରେ ଛଳଛଳ ହୋଇ ପଡୁଛି । କ୍ରମେ ନୀତୁ ଦୁଃଖୀ ହେବାକୁ ଆରମ୍ଭ କରୁଛି । କ୍ରମେ ମିଲି ପ୍ରତି ଈର୍ଷାନ୍ୱିତ ହୋଇ ପଡୁଛି ନୀତୁ । କିଛି ଗୋଟା ପ୍ରତିଶୋଧ ନେବାକୁ ଉଦ୍ୟତ ହେଉଛି ନୀତୁ । ହଠାତ୍ କିଛି ଗୋଟା ଅଘଟଣ



Digitized by srujanika@gmail.com

ଘଟାଇ ଦେବାକୁ ସେ ବ୍ୟଗ୍ର ହୋଇ ପଡୁଛି ।

ସିଦ୍ଧାର୍ଥ ଓ ମିଲିର ସମ୍ପର୍କକୁ ନେଇ ଏକଦା ଖୁସିରେ ଆତ୍ମହରା ହୋଇ ପଡୁଥିବା ନୀତୁ ଏବେ ଅସମ୍ଭବ ଯନ୍ତ୍ରଣା ଭୋଗୁଛି । ଏହା କାହିଁକି ଘଟୁଛି? ଏହି ଯନ୍ତ୍ରଣାର କାରଣ ସିଦ୍ଧାର୍ଥ ନା ମିଲି ନା ସେ ନିଜେ ତାହା ଜାଣି ନ ପାରିବାରୁ ସେ ଅଧିକ ଭାଙ୍ଗି ପଡୁଛି ।

ତେବେ ଆଜି ସନ୍ଧ୍ୟା ପରଠାରୁ ତା ଗୋଡହାତ କାହିଁକି ବଧିରା ହୋଇ ପଡୁଛି । ଦେହ ହାତ ଅବଶ ଲାଗୁଛି । ନିଜକୁ ପାପୀ ମନେ କରି ଆଖି ଛଳଛଳ କରୁଛି । ଏସବୁର କାରଣ ସେ ଖୋଜିବାକୁ ଚେଷ୍ଟା କରି ମଧ୍ୟ ବିଫଳ ହେଉଛି ।

ଆଃ, ଦୁଷ୍ଟ ସିଦ୍ଧାର୍ଥଟା କେମିତି ନିର୍ଲଜ ଓ ନିଷ୍ଠୁର ଭାବେ ତା ଆଗରେ ମିଲିକୁ କିସ୍ ପରେ କିସ୍ କଲା । ପ୍ରଥମେ ତା ଗାଲରେ ଚୁମା ଦେଲା । ପରେ ତା ବେକରେ । ପରେ ତା ପିଠିରେ । ପରେ ତା କପାଳରେ । ପରେ ତା ବାହୁରେ । ପରେ ତା ଛାତିରେ । ପରେ ତା ଓଠରେ। ଆଃ... । ତା ଦେହ କ'ଣ ହୋଇ ଯାଉଛି । ଏ ସମସ୍ତ ପ୍ରକ୍ରିୟା ତା ଉପସ୍ଥିତିରେ ସିଦ୍ଧାର୍ଥ ମିଲିକୁ ପ୍ରୟୋଗ କଲା । ଆଃ... । ସିଦ୍ଧାର୍ଥ ଦୁଷ୍ଟ । ସିଦ୍ଧାର୍ଥ କ'ଣ ଏତିକି ଜାଣି ପାରେନା ଯେ ଗୋଟିଏ ଝିଅ ସମ୍ମୁଖରେ ଅନ୍ୟ ଏକ ଝିଅକୁ ଚୁମ୍ବା ଦେବା ଓ ଆଲିଙ୍ଗନ କରିବାର ପରିଣତି କ'ଣ ହୋଇପାରେ ।  ଏହା ଅନ୍ୟ ଝିଅଟି ଉପରେ କି ପ୍ରଭାବ ପକାଇ ପାରେ?

କଲେଜ କ୍ୟାମ୍ପସ ମହାଦେବ ମନ୍ଦିର ଇଉକାଲ୍ପଟାସ୍ ଜଙ୍ଗଲରେ ସେଦିନ ମିଲି ଓ ସିଦ୍ଧାର୍ଥଙ୍କ ସାଥୀରେ କେବଳ ଥିଲା ନୀତୁ । ଆଜି ନୀତୁ ମଧ୍ୟରେ ଯାହା ବି ଅଘଟଣ ଘଟୁଛି ତାହାର କାରଣ ଖୋଦ୍ ସେ ନିଜେ ବୋଲି ନିଜକୁ ଦୋଷ ଦେଉଛି । କାରଣ ନୀତୁ ହିଁ ସେମାନଙ୍କୁ ଏହି ଜଙ୍ଗଲକୁ ଡାକି ଆଣିଛି ଓ ସେମାନଙ୍କୁ ପ୍ରେମ ବିନିମୟର ସୁଯୋଗ ଦେଇଛି । ସେମାନଙ୍କୁ ସବୁକିଛି ଉପଭୋଗ କରିବାର ସୁଯୋଗ ଦେଇ ସାରିବା ପରେ କ୍ରମେ ନୀତୁ ସର୍ବସ୍ୱାନ୍ତ ହୋଇ ପଡୁଛି । ଅସହାୟ ହୋଇ ପଡୁଛି । ଏହି ଅସହାୟର କାରଣ ସେ ନିଜେ ବୋଲି ସେ ଜାଣିଛି ।

ଆଜିର ଏହି ଘଟଣା ପରେ ନୀତୁର କ'ଣ ହେବ ସେ ବୋକୀଟା ଜାଣି ନଥିଲା । ପରିଣତି ସମ୍ପର୍କରେ ଜାଣି ପାରିଥିଲେ ହୁଏତ ନୀତୁ ଆଜି ମାନବୀ ନ ହୋଇ ଦେବୀ ହୋଇଥାନ୍ତା । ଯଦି ସେ ଦାନବୀ ହୋଇଯିବ? ଓଃ... । କି ଉଦ୍ଭଟ ଚିନ୍ତା ଗ୍ରାସି ପକାଉଛି ନୀତୁକୁ । ନୀତୁ ଆତଙ୍କିତ । ଉତ୍ତେଜିତ ।

ଏବେ ନୀତୁର ଦେହର ମେଟାବୋଲିଜିମ୍‌ରେ  ଅନେକ ପରିବର୍ତ୍ତନ ଘଟୁଛି । ମସ୍ତିଷ୍କର ଘଟୁଛି ପ୍ରକ୍ରିୟାକରଣ ଓ ଫର୍ମାଟିଂ । ମସ୍ତିଷ୍କର ମଦର ବୋର୍ଡ ସିଡ଼ି ନ ମିଳିଲେ ନୀତୁ ଆଉ ନୀତୁ ହୋଇ ନଥିବ । ବଦଳି ଯାଇଥିବ ଅନ୍ୟ ଏକ ସିଷ୍ଟମକୁ । ମାନେ ସମ୍ପୂର୍ଣ୍ଣ ନୂଆ ଓ ଅଜଣା । ପୁଣି



Digitized by srujanika@gmail.com

ନୂଆ ସଫ୍‌ଟ ୱେୟାର ଲୋଡ୍ ଓ ନୂଆ ପ୍ରୋସେସରେ କାମ । ଯେତ୍ । ନୀତୁର ମୁଣ୍ଡ ଗୋଳମାଳ ହୋଇ ଯାଉଛି । ସେ କାହିଁକି ଆଜି ଏତେ ଦୁର୍ବଳ ହୋଇ ପଡୁଛି? କ୍ରମେ ନୀତୁ ଆତଙ୍କିତ ହୋଇ ପଡୁଛି । ଦେହରେ ୧୦୫ ଟେମ୍ପରେଚର । ସେକେଣ୍ଡ ପ୍ରତି ୭୨ରୁ ଊର୍ଦ୍ଧ୍ୱ ହୃତ୍‌ସ୍ପନ୍ଦନ ।

ସେଦିନ ସନ୍ଧ୍ୟାରେ ମିଲି ଓ ସିଦ୍ଧାର୍ଥ ସେଇ ମୋଟା ୟୁକାଲପଟାସ୍ ଗଛ ମୂଳେ ବସିଥିଲେ । ନୀତୁ ବାହାନା କରି ଅନ୍ୟ ଏକ ଗଛ ମୂଳେ କିଛି ନ ଜାଣିବା ଓ ନ ଦେଖିବା ପରି ବସି ରହିଲା । ସିଦ୍ଧାର୍ଥ ପୁଣି ତାର ଦୁଷ୍ଟାମୀ ଆରମ୍ଭ କଲା । ମିଲିକୁ ଚୁମ୍ବନ ପରେ ଚୁମ୍ବନ ଦେଲା । ତାକୁ ନିବିଡ ଭାବେ ଆଲିଙ୍ଗନ କଲା । ସେତେବେଳକୁ ସନ୍ଧ୍ୟା ବହଳ ହୋଇ ଆସୁଥିଲା । ପକ୍ଷୀମାନେ ଫେରନ୍ତି ପଥରେ ସେମାନଙ୍କ ମୁଣ୍ଡ ଉପର ଦେଇ ଉଡି ଯାଉଥିଲେ । ଜଙ୍ଗଲ ମଧ୍ୟରେ ଅନ୍ଧାର ତାର ପ୍ରଭାବ ବିସ୍ତାର କରି ସାରିଥିଲା । ସିଦ୍ଧାର୍ଥ ଓ ମିଲି ସେଇ ଗଛ ମୂଳେ ବସି ଅପେକ୍ଷା କରୁଥିଲେ ସେହି ଅନ୍ତରଙ୍ଗ ମୁହୂର୍ତ୍ତକୁ; ଯେଉଁ ମୁହୂର୍ତ୍ତ ହିଁ ନୀତୁର ସର୍ବନାଶର କାରଣ! କ୍ରମେ ସିଦ୍ଧାର୍ଥର ହାତ ମିଲି ଦେହରେ ଏକ ବାଟବଣା ପଥିକ ପରି ଘୁରି ବୁଲିଲା ।

ବାଟବଣା ହୋଇ ଯାଇଥିବାରୁ ବିଚରା ହାତ ଦୁଇଟି ଶେଷରେ ମିଲିର ଛାତିର ଉପତ୍ୟକାରେ ଆଶ୍ରୟ ନେଲେ । ଛାତି ଭିତରେ ମାନେ ନୋ ଏଣ୍ଟ୍ରି ଜୋନ୍‌ରେ । ସେଠାରେ ସେ ଦୁଇ ହାତ ବିଶ୍ରାମ ନେଉଥିବାବେଳେ ମିଲିର ଛାତିରେ ସୃଷ୍ଟି ହେଉଥିଲା ଅସଂଖ୍ୟ କୋଳାହଳ । ମିଲି ନିସ୍ତେଜ ଅବସ୍ଥାରେ ପଡି ରହିଥିଲା ।

ସିଦ୍ଧାର୍ଥ ମିଲିର ଖୋଲି ଯାଇଥିବା ବ୍ରା ପିନ୍ ମାରୁମାରୁ ତାର ପୋଷାକକୁ ସଜାଡୁଥିଲା । ମିଲି ନିସ୍ତେଜ ହୋଇ ପଡିଥିବାରୁ ସିଦ୍ଧାର୍ଥ ତା ମୁହଁରେ ପାଣି ସିଞ୍ଚିବା ପରେ ସେ ଉଠି ବସିଥିଲା ।

ଅସମ୍ଭବ ଭାବେ ମିଲି ଉଦାସ ହୋଇ ଯାଇଥିଲା । ସେ ଜଣେ ବିଜିତ କିମ୍ବା ପରାଜିତଙ୍କ ଭଳି ଲାଗୁଥିଲା । କିଛି ହରେଇଥିବା କିମ୍ବା କିଛି ପାଇଥିବା ଭଳି ଲାଗୁଥିଲା । କିଛି ସମୟ ତଳି ପେଟକୁ ଚାପି ଧରି ବସିଥିବା ବେଳେ କେବଳ ମିଲିର ଆଖିରୁ କେଇ ବୁନ୍ଦା ଲୁହ ବୋହି ଆସୁଥିଲା । ସେ ଲୁହ ଖୁସିର ନା ଦୁଃଖର? ପୁରୁଣା ସିଷ୍ଟମର ନା ନୂଆ ସିଷ୍ଟମର? ସିଷ୍ଟମ ଫର୍ମାଟିଂ ପୂର୍ବର ନା ପରର?

କ୍ରମେ ଅସମ୍ଭବ ନିରବତା ତିନିଜଣଙ୍କୁ ପ୍ରଭାବିତ କରୁଥିବାବେଳେ ନୀତୁ ସେଠାରୁ ଉଠି ଆସି ମିଲିକୁ ହଷ୍ଟେଲ ଫେରିବାକୁ କହିଲା । ସିଦ୍ଧାର୍ଥ ନୀତୁକୁ କ୍ଷମା ମାଗିଲା । ନୀତୁ କିନ୍ତୁ ପୂର୍ବ ଭଳି ଆଉ ଚଞ୍ଚଳ ନ ଥିଲା । ସେ ଅସମ୍ଭବ ଭାବେ ଉଦାସ ଓ ଗମ୍ଭୀର ହୋଇ ଯାଇଥିଲା । ମିଲିକୁ ଅନେଇ ଦୁଃଖ କରୁଥିଲା । ଏବଂ ସିଦ୍ଧାର୍ଥକୁ ସିଧା ଚାହିଁ ପାରୁ ନଥିଲା । କ'ଣ ପାଇଁ ଏସବୁ ପରିବର୍ତ୍ତନ ଘଟିଗଲା ତାହା ହିଁ ତିନି ଜଣଙ୍କୁ ବିଚଳିତ କରୁଥିଲା ।



Digitized by srujanika@gmail.com

ନୀତୁ ଆଜିର ଏହି ଘଟଣା ପରେ ଅଧିକ ଫିଲ୍ କରୁଛି କାହିଁକି ସେ ଜାଣି ପାରୁନି । ସେହି ଘଟଣା ପରଠାରୁ ନୀତୁ ବେଶି ଚଚି ହୋଇ ଯାଇଛି । ଦେହ ଉପରେ ମନ ପ୍ରଭାବହୀନ ହୋଇ ପଡୁଛି । ନୀତୁ ଦେହରେ ସେବେଠୁ ନିଆଁ ଲାଗିଛି , କୋଇଲା ଖଣି ଭଳି; ପାଣି ପକାଇଲେ ବି ଲାଭ ନାହିଁ । କ୍ରମେ ନୀତୁ ଅଧିକରୁ ଅଧିକ କୁହୁଳି ଦେହଟାକୁ ଦରପୋଡା କରୁଛି । କେବଳ ଯାହା ଧୂଆଁ କୋଥଳେଇ ନୀତୁର ଦେହଟାର ଜଳିବା ପ୍ରକ୍ରିୟାକୁ ଜାରି ରଖୁଛି ।

ନୀତୁ ଏହି ଘଟଣା ନିଜ ଆଖିରେ ଦେଖିବା ପରଠାରୁ ତା ଦେହ ସେତେବେଳଠୁ ଜମାଟ ବାନ୍ଧିବାକୁ ଆରମ୍ଭ କରିଛି । ଆଖି ବୁଜିଲେ ମିଲି ଦେହରେ ଚାଲୁଥିବା ସିଦ୍ଧାର୍ଥର ଦୁଷ୍ଟ ହାତ ଓ ତାର ଲୋମଶ ଛାତି ଓ ନିଆଁ । ନିଆଁ, ଯନ୍ତ୍ରଣା ଓ ଧୂଆଁ । ଆଃ.. ସେ ମରିଯାଆନ୍ତା କି ଭାବୁଛି ନୀତୁ । ଯଦିଓ ସେ ଜାଣେ ସିଦ୍ଧାର୍ଥ ମିଲିର ଓ ମିଲି ସିଦ୍ଧାର୍ଥର । ସେ କେବଳ ସେ ଦୁହିଁଙ୍କ ମଧ୍ୟରେ ଏକ ମାଧ୍ୟମ ଓ ମେସେଞ୍ଜର୍ ।

କ୍ରମଶଃ ଅବଶ ହୋଇ ପଡୁଛି ନୀତୁ । କ୍ରମଶଃ ସ୍ୱାର୍ଥପର ହୋଇ ଉଠୁଛି ନୀତୁ । କ୍ରମଶଃ ପ୍ରତିଶୋଧପରାୟଣ ହୋଇ ଉଠୁଛି ନୀତୁ । କ୍ରମଶଃ ମିଲିକୁ ଆଉଟ୍ କରି ସିଦ୍ଧାର୍ଥକୁ ବୋଲ୍ଡ କରି ଦେବାକୁ ଇଛା ହେଉଛି ନୀତୁର । କ୍ରମଶଃ ଅଧିକ ହିଂସ୍ର ହୋଇ ଉଠୁଛି ନୀତୁ ।

ହଷ୍ଟେଲକୁ ଫେରିଲା ପରେ ମିଲି ଅବଶ ହୋଇ ବେଡ୍‌ରେ ଶୋଇ ପଡୁଛି । ପ୍ରେମରେ ଜୁଡୁବୁଡୁ ଦେହଟାକୁ ଶେଯରେ ଲୋଟେଇ ଦେଇ ମିଲି କ୍ରମେ ସ୍ୱପ୍ନିଳ ହୋଇ ଉଠୁଛି । ମିଲି ଆଜି ଅଧିକ ସୁନ୍ଦରୀ ଲାଗୁଛି । ତା ଭିତରେ କିଛି ଗୋଟା ଅଧିକ ଯୋଡି ହୋଇଗଲା ପରି ଲାଗୁଛି । ସେ ଆଜି ଅଧିକ ସମ୍ପୂର୍ଣ୍ଣ ଲାଗୁଛି । ମିଲି ଆଜି ଏକ ଚିରସ୍ରୋତା ନଦୀ ଭଳି ଲାଗୁଛି । ନଦୀରେ ବନ୍ୟା ଆସି କୂଳ ଲଂଘୁଛି । ମିଲି ଆଜି ଉଲଂଘ । ସ୍ରୋତସ୍ୱିନୀ । ଚିର ପ୍ରବାହିତା । ଛଳଛଳ । ସେ ଆଜି ଭାସମାନ ମେଘ ନୀଳ ଆକାଶର । ଗ୍ରୀଷ୍ମ ସନ୍ଧ୍ୟାର ଉଷୁମ ପବନ । ଉଡନ୍ତା ପକ୍ଷୀ ଠିକଣାହୀନ ନୀଡର । ଦୂରନ୍ତ ଦିଗ୍‌ବଳୟ ।

ନୀତୁ ମିଲିର ଏ ଅସମ୍ଭବ ପରିବର୍ତ୍ତନ ଲକ୍ଷ୍ୟ କରୁଛି । ନୀତୁର ନିଷ୍ଫଳ ଶରୀର ଲୋଟୁଛି ଶେଯରେ ଆନନ୍ଦରେ, ବିଭୋରରେ ଓ ପରିତୃପ୍ତିରେ । ନୀତୁର ଶରୀର ଭାସୁଛି ଶୂନ୍ୟ ଶୂନ୍ୟ ମହାଶୂନ୍ୟରେ । ଉଡୁଛି ଆକାଶରେ ପବନରେ ମନ ଗହନ ବନରେ । କ୍ରମେ ମିଲିର ସତ୍ତା ହଜି ଯାଉଛି । ସେ ନିଜକୁ ସିଦ୍ଧାର୍ଥର ଲୋମଶ ଛାତିରୁ ଆବିଷ୍କାର କରିବାକୁ ସକ୍ଷମ ହେଉଛି । ଆଜି ମିଲି ହୋଇ ଯାଇଛି ସିଦ୍ଧାର୍ଥମୟ । ସିଦ୍ଧାର୍ଥ ଆକ୍ରାନ୍ତ! ସିଦ୍ଧାର୍ଥ ପୀଡିତ!

ନୀତୁ କ୍ରମେ ଅଧିକ ଈର୍ଷାପରାୟଣ ହୋଇ ଉଠୁଛି । ବିଳମ୍ବିତ ରାତିରେ ନୀତୁ ତା ନିଜ ଟପ୍ ଖୋଲି ଛାତିକୁ ଆଇନାରେ ଦେଖୁଛି । ସେ ବି ତ ଯୋଗ୍ୟା ବୋଲି ଭାବୁଛି । ତାର ବଢନ୍ତା ଛାତିକୁ



Digitized by srujanika@gmail.com

ଦେଖି ନିଜ ପ୍ରତି ଲୋଭ ଆସୁଛି । ସିଦ୍ଧାର୍ଥ କ'ଣ ତାକୁ.... । ଭାବି କ୍ରମେ ଭୟଭୀତ ହୋଇ ପଡୁଛି । କ୍ରମେ ସିଦ୍ଧାର୍ଥ ପ୍ରତି ତାର ଅସମ୍ଭବ ଦୁର୍ବଳତା ଆସୁଛି । ସିଦ୍ଧାର୍ଥର ଲୋମଶ ଛାତି ଓ ବଳିଷ୍ଠ ବାହୁ କଥା ମନେ ପକାଇ ସେ ଉଲ୍ଲସିତ ହୋଇ ପଡୁଛି ।

ମିଲି ପାଖରୁ କିଛି ଗୋଟା ଛଡେଇ ଆଣିବାକୁ ବ୍ୟଗ୍ର ହୋଇ ପଡୁଛି ନୀତୁ ।

ରାତି ଅନେକ । ମିଲି ଶୋଇ ପଡିଲାଣି । ମିଲିର ମୁହଁ ଆଜି ବେଶ୍ ଉଜ୍ଜ୍ୱଳ ଲାଗୁଛି । ଏକ ସଦ୍ୟ ଗୋଲାପ କଢ଼ ଭଳି ମିଲି ଲୋଟି ପଡିଛି ତା ଶେଯରେ । ମିଲି ନୁହେଁ ତ ଗୋଟିଏ ପ୍ରେମ ଢୁଡୁବୁଡୁ ଶରୀର ଲୋଟିଛି ସ୍ୱପ୍ନମୟ କୋମଳ ଶେଯରେ ।

ନୀତୁକୁ ନିଦ ନାହିଁ । ତାର ଶିରାପ୍ରଶିରା ଜମାଟ ବାନ୍ଧି ଯାଉଛି । ନୀତୁକୁ ପାପୀ ପାପୀ ଲାଗୁଛି । ଗୁଡାଏ ବାଜେ ଚିନ୍ତା ଘାରି ଚାଲିଛି ନୀତୁକୁ । ନୀତୁ ଅଧିକରୁ ଅଧିକ ବିବ୍ରତ ହୋଇ ପଡୁଛି । ଗୋଟା ଆଇଡିଆ ହଠାତ୍ ନୀତୁର ମୁଣ୍ଡକୁ ଢୁକିଯିବା ପର ନୀତୁ ସେଥିନେଇ ବେଶ୍ ଚିନ୍ତାଶୀଳ ହୋଇ ପଡୁଛି । ରାତି ଏବେ ଅସମ୍ଭବ ଭାବେ ଉଦାସ ହୋଇ ଯାଇଛି । ଯାହା ହଷ୍ଟେଲ ପଛପଟେ କେଇଟା ବିଲୁଆ ରାତିଟାକୁ ଅଧିକ ଭୟଙ୍କର କରିବାକୁ ପ୍ରୟାସ କରୁଛନ୍ତି । ବିଲୁଆ ଭୁକିବାଟା ନୀତୁର ସବୁଠୁ ଅଧିକ ଭୟର କାରଣ । କ୍ରମେ ରାତିଟା ଅଧିକ ଭୟଙ୍କର ହୋଇ ପଡୁଛି । ନୀତୁ କିଛି ଗୋଟା ଯୋଜନା ନେଇ ବ୍ୟତିବ୍ୟସ୍ତ ହୋଇ ପଡୁଥିବାବେଳେ ସହଜରେ ବିଜୁଳି ବିଭ୍ରାଟ ତାକୁ ଅଧିକ ସହଜ କରି ଦେଉଛି ।

ଛକ୍ ଛକ୍ । ରାତି ନିସ୍ତବ୍ଧ । ଅସହାୟ । ନୀତୁ ଏବେ ରକ୍ତମୁଖା । ଦେବୀ ନା ଦାନବୀ । ନୀତୁର ଦେହ ରକ୍ତ ଢୁଡୁବୁଡୁ । କାହାର ଏଇ ରକ୍ତ? ମିଲିର ନରମ ଦେହର ରକ୍ତରେ ଗାଧୋଇ ପଡିଛି ନୀତୁ! ନୀତୁ ଏବେ କ'ଣ କରିକି ବସିଛି । କି ଅଘଟଣୀୟ କାଣ୍ଡ ଘଟେଇ ବସିଛି । ନୀତୁ ସମ୍ପୂର୍ଣ୍ଣ ଉଲଗ୍ନ ଓ ସଜ୍ଞାହୀନ ।

ସକାଳୁ ହଷ୍ଟେଲରୁ ମିଲିର ଶବକୁ ଉଦ୍ଧାର କରାଯାଉଛି । ପୋଲିସ ଆଗରେ ନୀତୁର ଆଶ୍ଚର୍ଯ୍ୟଜନକ ଆତ୍ମସମର୍ପଣ ସହରରେ ଏକ ଚାଞ୍ଚଲ୍ୟ ଖେଳାଇ ଦେବାକୁ ସମର୍ଥ ହୋଇଛି । କ୍ରମେ ଏକ ସୁପରିକଳ୍ପିତ ହତ୍ୟାକାଣ୍ଡର ରହସ୍ୟ ଉନ୍ମୋଚିତ ହେବାରେ ଲାଗିଛି ।

□



Digitized by srujanika@gmail.com

# ଛାବା, ହୁଗୁଲା
# ଓ ତାର ପିଲାଦିନ





Digitized by srujanika@gmail.com

ନିଦରୁ ଉଠି ଢୁଗୁଳା ଦେଖିଲା ତାର ପେଣ୍ଟ୍ ଖୋଲା । ଏହା ସହିତ ତା ଯନ୍ତ୍ରଟାରେ କିଏ ରଙ୍ଗ ବୋଳି ତାକୁ ଜୋକର କରି ଦେଇଛି । ଏମିତି ଭାବେ ତାକୁ ନାରଖାର କରାଯାଇଛି ।

ଢୁଗୁଳାର ପେଣ୍ଟ୍ ଖୋଲିବା କାମଟା କାହା ପାଇଁ ସେମିତି କଷ୍ଟକର ବି ନୁହେଁ । ଛିଣ୍ଡା ପେଣ୍ଟ୍‌ଟାକୁ ସେ କେବଳ ଅଣ୍ଟାରେ ମୋଡି ଖୋସା ମାରି ଦେଇଥାଏ । ସେ ପେଣ୍ଟ୍‌ଟାରେ ଲାଗିଥାଏ କିଲେକିଲେ ମଳି । ବୋତାମ ନଥାଏ କି ହୁକ ନଥାଏ । ପେଣ୍ଟ୍‌ଟା ବି ତାର ନିଜର ନୁହେଁ । ଜଣେ କେବଳ ସାମାନ୍ୟ ଟାଣି ଦେଲେ ପେଣ୍ଟଟା ସହଜରେ ତା ଅଣ୍ଟାରୁ ବହାରିପଡି ତଳକୁ ଖସି ପଡିବାକୁ ସମର୍ଥ ହୋଇପାରିବ ।

ପେଣ୍ଟ୍ ଖୋଲି ଯନ୍ତ୍ରରେ ରଙ୍ଗ ବୋଳିବା ସହିତ ମୁହଁରେ କଳା ରଙ୍ଗ ବୋଳି ନିଶ ଦାଢି ଆଙ୍କି ତାକୁ କୋଉ ଚିତ୍ରକର ଜୋକର ବନେଇ ଦେଇଛି ?

ଢୁଗୁଳା ତା ପେଣ୍ଟ୍ ପକିଟିରେ ଥିବା ଛୋଟିଆ ଭଙ୍ଗା ଆଇନାରେ ତାର ପ୍ରିୟ ମୁହଁକୁ ଦେଖି ସାରିବା ପରେ ତା ରଗ ତ ପଞ୍ଚମକୁ ଚଢିଗଲା । ରାଗି ଗୁରୁଗୁରୁ ହେଲା । ଯଦିଓ ତା ରାଗର ସେମିତି କିଛି ଖାସ୍ ମୂଲ୍ୟ ନାହିଁ, ତଥାପି ରାଗି ଗୁରୁଗୁରୁ ହେଲା । ରାଗିଲା ଏବଂ ରାଗିଲା । ଏବଂ କ୍ରମେ ସେ ଜଣେ ରାଗି ବାଳକ ହେବାକୁ ଆରମ୍ଭ କଲା ।

ଏ କାମ ଶଳା ସେହି ନେଫଡା ପେଟୁଆ ଢାବା ମାଲିକ ଆଉ ନୁଙ୍କୁରା, ଠେକି, ଆଟିକା ଛଡା ଆଉ କାହାର ନୁହେଁ ।

ନା, ଏ ଶଳା ଢାବାରେ ଆଉ ବେଶି ଦିନ ରହି ହେବନି । ଗାଁକୁ ପଳେଇବି । ଆଜି ଏଇକ୍ଷିଣା ଗାଁ ଚାଲିଯିବି । ଏ ଶଳା ହାରାମି ପାଖରେ ଆଉ କାମ କରି ହବନି । ଶଳା ଟଙ୍କା ଦୁଇଶ'ରେ ଠେକି, ନୁଙ୍କୁରା, ଆଟିକା ଆଉ ମତେ ଖଟେଇବ । ବାସୀ ଭାତ, ବାସୀ ରୁଟି, ବାସୀ ତର୍କାରୀ ଖାଇବାକୁ ଦବ । ଯୋଉଦିନ ଚିକେନ୍ ଦବ ତାହା ପୁଣି ଦୁଇ ଦିନର ବାସୀ । ତିନି ଦିନର ମାଛ ଭଜା ଖାଇ ନୁଙ୍କୁରାକୁ କି ଗୋଟା ଜର ହେଲା, ପନ୍ଦର ଦିନ କାମ କରି ନପାରି ଖାଲି ଶୋଇ ରହିଲା । ଖାଲି ଶୋଇଶୋଇ କାମ ନ କରିବାରୁ ସେହି ହାରାମି ଢାବା ମାଲିକ ତା ଉପରେ କେତେ ଗରଗର ହୋଇଛି । କୁଆଡେ ତାର ଫୁଡ୍ ପଏଜନ୍ ଫଏଜନ୍ ନା କ'ଣ ଏମିତି ହୋଇଥିଲା । ଏହା ହେଲେ ଲୋକେ ମରି ଯାଆନ୍ତି ବୋଲି ଠେକି କୋଉଠୁ ଶୁଣିକି ଆସି କହୁଥିଲା । ଶଳା କମ୍ ପଇସା ଦବ, ତା ଭିତରେ ପୁଣି ହଇରାଣ କରିବ । ହାରାମି ଶଳା ।

ପୁଣି ଛୋଟିଆ ପିଲା ହୋଇଥିବାରୁ ଏ ସବୁ ଶଳାଗୁଡା ତା ସାଙ୍ଗରେ ବେଶି ଲାଗୁଛନ୍ତି ।



Digitized by srujanika@gmail.com

ଲାଗି କ'ଣ ପାଉଛନ୍ତି କେଜାଣି? ଯେମିତି ତା ସାଙ୍ଗରେ ନ ଲାଗିଲେ ଏ ଶଳାଗୁଡାଙ୍କର ଭାତ ହଜମ ହେବନାହିଁ?

ଦୁଗୁଲା ଏ କଥା ଭାବି ତାର ଆଖି ଛଳଛଳ ହୋଇ ଯାଉଥିଲା । ଟିକେଟିକେ କଥାରେ କାନ୍ଦି ପକାଇବା ଦୁଗୁଲାର ପୁରୁଣା ଅଭ୍ୟାସ । ଏମିତି ସବୁ ଦିନ ଏ ଢାବା ମାଲିକ ତା ସାଙ୍ଗରେ ଲାଗୁଥିବ ଆଉ ସେ ନାକ ସକଉଥିବ । ଢାବା ମାଲିକ ଦାନ୍ତ କେଲୋଉଥିବ ।

ସବୁ ଦିନ ଦୁଗୁଲା କାନ୍ଦିବ, ସାର୍ଟ ହାତରେ ଲୁହ, ଶିଙ୍ଘାଣି ପୋଛିବ ଓ ପୁଣି ଯାଇ ପିଆଜ, ରସୁଣ ଚୋପା ଛଡେଇବ । ମସଲା ଛେଚିବ । ଢାବା ପିଲାମାନେ ହସୁଥିବେ ତ ହସୁଥିବ ସେଇ ହାରାମି ଢାବା ମାଲିକ । ମୁରୁକି ମୁରୁକି ହସୁଥିବ । ଏଣେ ଦୁଗୁଲା କାନ୍ଦୁଥିବ । କାନ୍ଦୁଥିବ ତ ତା ଲୁହ ବୋହି ସେଇ ବଟା ମସଲାରେ କିମ୍ବା କଟା ପରିବାରେ ଟପ୍ ଟପ୍ ପଡୁଥିବ । ଢାବା ମାଲିକ ଗୋଇଠାଟେ ପକଉଥିବ । ପେଣ୍ଡୁ ଭଳି ସେ ମସଲା ଉପରେ ହାମୁଡେଇ ପଡୁଥିବ । ପୁଣି ସକସକ ହୋଇ କାନ୍ଦି ପକଉଥିବ । ଢାବା ମାଲିକ ଦାନ୍ତ ଖୋଳୁଥିବ । ଏମିତି ଦାନ୍ତଖୋଳା ଲୋକ ଉପରେ ଦୁଗୁଲାର ଭାରି ରାଗ ହଉଥିବ ।

ଏମିତି ଟିକେ ଟିକେ କଥାରେ କାନ୍ଦିବା ପିଲାବେଳୁ ଦୁଗୁଲାର ଅଭ୍ୟାସ ହୋଇଯାଇଛି । ଯେମିତି ସେ ନ କାନ୍ଦିଲେ ପୃଥିବୀରେ ସୂର୍ଯ୍ୟ ଉଇଁବ ନାହିଁ । କୁକୁଡା ବୋବେଇବ ନାହିଁ । ଛେଳି ଘାସ ଖାଇବ ନାହିଁ । ପିଲାମାନେ ସ୍କୁଲକୁ ଯିବେ ନାହିଁ ।

ପିଲାବେଳେ ନିଶୁଆ ବାପାଟା ଟଳିଟଳି ଘରକୁ ଫେରୁଥିବ । ତା ପାଟି ମଦୁଆ ମଦୁଆ ଗନ୍ଧଉଥିବ । ମୁହଁରେ ମାଛି ଭଣଭଣ ଉଡୁଥିବେ । ଆଖି ଦୁଇଟା ଦେଶୀ ପିଆଜ ଭଳି ଲାଲ୍ ଲାଲ୍ ଦେଖାଯାଉଥିବ । ମଦ ନିଶାରେ ଝୁଲୁଥିବ । ଖାଲି ଢୋ ଢୋ କରି ବୋଉକୁ ପିଟୁଥିବ । ବୋଉ ପିଠି ଫାଟିଯାଇ ରକ୍ତ ବାହାରୁଥିବ । ଏହା ଦେଖି ଦୁଗୁଲା ଭେଁ କିନା କାନ୍ଦି ଉଠୁଥିବ ।

ବାପୁଟା ନା ରାକ୍ଷସୁଟା । ତାକୁ କେତେ ଥର ବି ସେଇ ରାକ୍ଷସ ବାପୁଟା ଟେକି ତଳକୁ କଚାଡି ଦେଇଛି । ପିଲାବେଳେ କେତେ ଥର ତାର ହାତ ଭାଙ୍ଗିଛି, ଗୋଡ ମୋଡି ହୋଇ ଯାଇଛି । ମାତ୍ର ଦଶ ପନ୍ଦର ଦିନ ସେ ନୂଆ କରି ଇସ୍କୁଲକୁ ଯାଇଥିଲା । ସେତିକିରେ ତାର ପାଠ ବହୁତ ହୋଇଗଲା । ବାପ ଜିଦ୍ ଧରି ବସିଲା ଆଉ ତାର ଇସ୍କୁଲ ଯିବା ବନ୍ଦ ହୋଇଗଲା ।

ଥରେ ବୋଉକୁ ଏମିତି ଭାବେ ସେହି ରାକ୍ଷସ ବାପୁଟା ପିଟିଲା ଯେ ସେ ଆଖି ତରାଟି ପକେଇଲା । ତୋଳା ମଟମଟ କରି ଦେଖିଲା ବେଳକୁ ଆଉ କିଛି ନାହିଁ । ବୋଉ ମରି ଯାଇଥିଲା । ପାଟିଗୋଳ ଶୁଣି ଲୋକବାକ ଧାଇଁ ଆସିଲେ । ବୋଉ ମୁଣ୍ଡରେ ପାଣି ଢାଳିଲେ । କାନ ଫୁଙ୍କାଫୁ ଙ୍କି କଲେ । ହେଲେ ବୋଉଟା ବଞ୍ଚିଲା ନାହିଁ । ବାପା ମାଡ଼ରୁ ତ୍ରାହି ପାଇଗଲା । ଗାଁ ଲୋକେ ଛି



Digitized by srujanika@gmail.com

ଛାକର କଲେ ।

ସେବେଠୁ ସେ ବାପଟା ପ୍ରତି ମନ ଛାଡି ଯାଇଛି ଢୁଗୁଳାର ।

ସେବେଠୁ ଭୁବନ୍ଶର ପଳେଇ ଆସିଛି ଢୁଗୁଳା ।

ସେବେଠୁ ଏଇ ଢାବା ମାଲିକ ତାକୁ ଗଧ ଭଳି ଖଟେଇଛି ।

ସେବେଠୁ ତା ବାପ ତା ପାଇଁ ମରିଯାଇଛି ।

ହେଲେ ସାନ ଭଉଣୀଟା ଗାଁରେ ଅଛି ବୋଲି ଘର ପ୍ରତି ତାର ଲୋଭ ଅଛି । ନ ହେଲେ ତାର ଆଉ ଘର ସହ ସମ୍ପର୍କ କ'ଣ? ତେବେ ସାନ ଭଉଣୀଟା ଗାଁରେ ଆ ତା ଘରେ କାମ କରୁଛି । ବିଚାରୀ ଦୁଃଖୀ । କେବଳ ତା ପାଇଁ ବୋଲିକି ସେ ଭୁବନ୍ଶର ଚାଲି ଆସିଥିଲା । ଭାବିଥିଲା ପଇସା ରୋଜଗାର କରି ଭଉଣୀଟାକୁ ପାଠ ପଢେଇବ । କିନ୍ତୁ ଏଇ ଶଳା ପେଟୁ ରାମ ପାଖରେ ଖଟି ଖଟି ତା ହାଲତ ବିଗିଡି ଗଲାଣି । ପଇସା କୋଉଠୁ ଅଣ୍ଟୁଛି ଯେ ଘରକୁ ପଠେଇବ । ତେବେ ଗଲା ମାସରେ ବହୁ କଷ୍ଟରେ ଶହେ ସତୁରୀ ଟଙ୍କା ଛପିଛପି ଢୁଗୁଳା ଘରକୁ ପଠେଇଛି । ହେଲେ ସେ ପଇସାରେ ବୋପାଟା ମଦ ପିଇ ଦଉଥିବ । ଭଉଣୀଟାକୁ କ'ଣ ଦଉଥିବ? ଏଇଥିପାଇଁ ଢୁଗୁଳା ଘରକୁ ପଇସା ପଠେଇବାକୁ ବେଳେବେଳେ ମନ କରେନା ।

କିନ୍ତୁ ଏ ଶଳା ପେଟୁ ରାମ ପାଖରେ ଖଟିଖଟି ତା ଦଫା ନିକିଲି ଗଲାଣି ।

ତେବେ ଛୋଟ ପିଲାଟା ହୋଇ ମଧ୍ୟ ଢୁଗୁଳା ଅନେକ ସମୟରେ ଅନେକ ଗୁରୁତ୍ୱପୂର୍ଣ୍ଣ କଥା ଚିନ୍ତା କରେ । ଅଥଚ ଏଇ ଢାବା ମାଲିକ ଆଉ ଢାବା ପିଲାମାନେ ତାକୁ ଗମାତ କରୁଛନ୍ତି । ଶଳା ହାରାମିଟା ଟ୍ରକ୍ ଚାପାରେ ମରି ଯାଉନି କୋଉଠି । ଡମ୍ଫର ତଳେ ଚାପି ହୋଇ କୁଚୁକୁଚା ହୋଇ ଯାଉନି? ବଞ୍ଚି ମତେ ଦହଗଞ୍ଜ କରୁଚି ।

ଆଉ ଶଳା ଏଇ ଠେକି, ନୁଙ୍ଗୁରା, ଆଟିକା ତା ଦୁଧ ଚିପିବେ, ଗାଣ୍ଡି ଚୁମୁଟିବେ, ପେଟୁରାମ ଦେଖିବ । ସବୁ ଜାଣିବ । ମୁରୁକି ହସିବ । କିଛି କହିବନି । ଚୁଡିଆ ଶଳା । ହାରାମି । ମରିଯାଉନୁ ଶଳା । ଜନ୍ତୁଘାତ ହୋଇଯାଉନି!

ସକାଳୁ କାଉକୁ ଛିଣ୍ଡା ରୁଟି ପକାଇ ଢାବା ମାଲିକ ପେଟୁ ରାମ ମୁରୁକି ମୁରୁକି ହସୁଛି । ଢୁଗୁଳା ରାଗିକି କିଛି କହିଲାନି । ଆଟିକା, ଠେକି, ନୁଙ୍ଗୁରା, ହାଣ୍ଡି, କଡ଼େଇ, ବାସୀ ପ୍ଲେଟ୍ ଧୋଉଛନ୍ତି । କିନ୍ତୁ ଢୁଗୁଳା ସେଠିକି ଗଲାନି । ସେ ଆଜି କିଛି କାମ କରିବନି ବୋଲି ମନେମନେ ନିଷ୍ପତ୍ତି ନେଇ ସାରିଛି । ବାସନ କି ପ୍ଲେଟ୍ ଧୋଇବନି କି ପିଆଜ, ଅଦା, ରସୁଣ ଚୋପା ଛଡେଇବନି । ଯାହା ହେଇଯାଉ ପଛେ ସେ ଆଜି କିଛି ବି କାମ କରିବନି । ଏ ଶଳା ହାରାମି ଢାବା ମାଲିକ ଗଲାକାଲି ନୁଙ୍ଗୁରା, ଠେକିକି ଲଗେଇ ତା ପେଣ୍ଟ ଖୋଲି ତାକୁ ନଙ୍ଗଳା କରି ତା ଯନ୍ତ୍ରରେ ଗଙ୍ଗ ବୋଳିଛି ।



Digitized by srujanika@gmail.com

ଶଳା, ହାରାମି, ମୁଁ ଯଦି ତୋ ପୁଅ ହୋଇଥାନ୍ତି, ତୁ ଶଳାଟା କ'ଣ ଏମିତି କରିଥାନ୍ତୁ? କହି କଇଁକଇଁ କାନ୍ଦିବାକୁ ଲାଗିଲା ଢୁଗୁଳା ।

ଆଠ ବର୍ଷର ହୋଇଥିଲା ସେ ଏଇ ଭୁବନ୍‌ଶର ଚାଲି ଆସିଥିଲା । ଆଉ ଏଇ ଢାବାରେ ପ୍ରଥମରୁ ଆଜି ପର୍ଯ୍ୟନ୍ତ ରହି ଆସିଛି । ତାର ଭୁବନ୍‌ଶରରେ ରହିବା ଆ ଭିତରେ ତିନି ବର୍ଷ ହୋଇ ଗଲାଣି । ଯେତେବେଳେ ଭୁବନ୍‌ଶର ନୂଆ ନୂଆ ଆସିଥିଲା ଏଠାରେ ଏତେ ଗାଡ଼ିଘୋଡ଼ା, ବଡବଡ କୋଠାଘର ଦେଖି ସେ କାବା ହୋଇଯାଇଥିଲା । ଶଳା, ଏଠି କେତେ ଚଉଡା ରାସ୍ତା । କେତେ ବସ୍, ଟ୍ରକ, ଟେକ୍ସି, ଅଟ । କଳାକଳା ରାସ୍ତା । ଶଳା, ଏ ରାସ୍ତା ଏତେ ସୁନ୍ଦରିଆ ହୋଇଛି ରାସ୍ତା ଉପରେ ଭାତ ଖାଇବାକୁ ଇଛା ହେଉଛି । । କେତେ ଚଉଡା ରାସ୍ତା ବେ । ଆମ ଗାଁ ରାସ୍ତା ଭଳିଆ ତିରିଶିଟା ଏହା ଭିତରେ ଗଳିଯିବ ।

ପ୍ରକୃତରେ ତା ନା ପ୍ରଥମରୁ ଢୁଗୁଳା ନଥିଲା । ତା ନାଁ ଥିଲା ସତ୍ୟ । ମାନେ ସତ୍ୟପ୍ରକାଶ । କିନ୍ତୁ ଏଇ ଢାବାକୁ ଆସିଲା ପରେ ଢାବା ମାଲିକ ପେଟୁ ରାମ ତାକୁ ଢୁଗୁଳା ବୋଲି ଡାକିଲା । ସେଇ ଦିନଠୁ ତା ନାଁ ଢୁଗୁଳା ହୋଇଗଲା । ଖାଲି ସେ ନୁହେଁତ । ଠେକି, ନୁଙ୍ଗୁରା ଆଉ ଆଟିକାର ବି ଏମିତି ସେଇ ଢାବା ମାଲିକ ନାଁ ଦେଇଛି । ଥରେ ତିନି ଜଣ ଲୋକ ଖାଉଥାନ୍ତି । ତାକୁ ସେଇ ଢାବା ମାଲିକ ହୁଇସ୍କି ଆଣିବାକୁ କହିଲା । ସେ କିନ୍ତୁ ହୁଇସ୍କି ନ ଆଣି ରମ୍ ନେଇ ଆସିଥିଲା । ଏଇଠି ସବୁ ବିଗିଡି ଯାଇଥିଲା । ସେଇଠୁ ସେ ଢାବା ମାଲିକଟା ଏତେ ଲୋକଙ୍କ ଆଗରେ ଏଡ଼େ ବଡ଼ ପାଟିରେ ହାଲା କରି କହିଲା:

ଢୁଗୁଳାଟା କିବେ । ଆର ନଟ୍ ବୁଲ୍‌ଟ ଛିଲା । ସକାଳୁ ସ୍କୁ ଧରି ଆସିବୁ ସଜାଡି ଦେବି ।

ଏତେ ଲୋକଙ୍କ ଆଗରେ କହି ଫେଁ ଫେଁ ଦାନ୍ତ ଛୋଡିଲା । ବେହିଆଟା ଶଳାଟା ।

ସେବେଠୁ ତ ତାକୁ ଢୁଗୁଳା ଢୁଗୁଳା ଡାକୁଛନ୍ତି । ସେ ବିଚରାଟା ବା କ'ଣ କରିବ? ଯେତେ ମନା କଲେ କି ରାଗିଲେ ସେ ଶଳା ହାରାମିଗୁଡା ଆହୁରି ବେଶି ବେଶି ଡାକୁଛନ୍ତି । ଏହା ବି ଦେହ ସୁହା ହୋଇଗଲାଣି ।

ଆଜି ଢୁଗୁଳା କିଛି କାମ କଲାନି । ନିଷ୍ପତ୍ତି ତ ନେଇଛି ଆଜି ଢାବା ଛାଡିବ । ରୋଷେଇ ଘର ପଛ ପଟେ କଛା ପାରି ଶୋଇ ରହିଲା । ଦିନମାନ ଶୋଇଶୋଇ ଉଠିଲା ସନ୍ଧ୍ୟାରେ । ଦିନରେ ଢାବା ମାଲିକ ତାକୁ ଯେତେ ଖାଇବାକୁ ଡାକିଲା ବି ସେ ଉଠିଲାନି । ରାତି ଆଠଟା ବେଳକୁ ଉଠିଲା । ଆଉ ଚାଲିଲା ଫିଲ୍ମ ହଲ ଆଡେ । ଢାବା ପଛ ପଟ ସିନେମା ହଲକୁ ଗଲା ନାଇଟ୍ ଶୋ ଦେଖିବାକୁ । ସେ ତ ନିଷ୍ପତ୍ତି ନେଇଛି ଘରକୁ ପଳେଇବ କିମ୍ବା ଅନ୍ୟ କେଉଁଠି କାମ ଦେଖିବ । ତେଣୁ ତାର ଆଉ ଭୟ ନଥାଏ ।



Digitized by srujanika@gmail.com

ଆ ଭିତରେ ସିନେମା ହଲ୍‌ର ଟିକେଟ୍ ଚେକିଂ କରୁଥିବା ସେଇ ବୁଢାଟା ସହ ଦୁଗୁଳାର ସାଙ୍ଗ ଦୋସ୍ତି ଜମି ଯାଇଥାଏ । ସେଦିନ ନାଇଟ୍ ଶୋରେ ଭାରି ବଢିଆ ଫିଲ୍ମ ପଡିଥାଏ । ମସ୍ତ୍ ଜବାନୀ । ଇଲୋ ବୋପା କେମିତି ଚଟାଚଟି... ଲୋ ବୋଉ । ସୁଉଦୁ ଲଙ୍ଗଳା ହେଇ... । ଏମିତି ଫିଲ୍ମ ଶଳା ଦୁନିଆରେ ଅଛି ବୋଲି ସେ ଗାଁରେ ଥିଲାବେଳେ ଜମା ଜାଣି ନଥିଲା । ଏଇ ଶଳା ଭୁବନ୍‌ଶରକୁ ଆସିବା ପରେ ଏଇ ଢାବା ପିଲାଙ୍କଠାରୁ ଜାଣିଲା ।

ଏଇ ଢାବା ପିଲାଙ୍କ ସାଙ୍ଗରେ ଯେଉଁ ଦିନ ପ୍ରଥମ କରି ଏଇ ଫିଲ୍ମ ଦେଖିବାକୁ ଆସିଥିଲା ସେଦିନ ସେ ନିଜକୁ ଭୁଲି ଯାଇଥିଲା । ତାର ମୁଣ୍ଡ ଝିମ୍‌ଝିମ୍ ହୋଇ ଯାଇଥିଲା । ତାକୁ ଗାଁ କଥା ମନେ ପଡିଥିଲା । କିନ୍ତୁ ପରେ ସେ ଅଭ୍ୟସ୍ତ ହୋଇ ଯାଇଥିଲା ।

ତା ପରଠୁ ସମୟ ସୁବିଧା ଦେଖି କେତେଥର ଦୁଗୁଳା ନାଇଟ୍ ଶୋ ଦେଖିବାକୁ ଆସିଛି । ଏଠିକି ଆସିବା ପରେ ସେଇ ଟିକଟ ଚେକିଂ କରୁଥିବା ସନ୍ତିଆ ବୁଢା ସହ ତାର ଚିହ୍ନା ପରିଚୟ ବଢିଛି । ସନ୍ତିଆ ବୁଢା ଢାବାକୁ ଖାଇବାକୁ ଆସିଲେ ତାକୁ ଅଧିକା ତିନି ପିସ୍ ମାଂସ ଦେଇଦିଏ ତ ସେଦିନ ରାତିରେ ତାର ନାଇଟ୍ ଶୋ ମାଗଣାରେ ଦେଖିବା ହୋଇଯାଏ ।

ସିଏ ଶଳା ହାରାମି ବୁଢା ବି ଛୋଟିଆ ଜନ୍ତୁ ନୁହେଁ । ନୁଙ୍ଗୁରା ବୁଢାଟା । ବୁଢା ହେଲାଣି ପ୍ରକୃତି ଛାଡିନି । ବ୍ଲୁ ଫିଲ୍ମ ଚାଲିଥାଏ । ବୁଢା ଆସି ଦୁଗୁଳା ପାଖରେ ବସିଲା । ଚାକୁନେଇ ହେଲା । କହିଲା ଫିଲ୍ମ ଭଲ ହୋଇଛି? ଉଖୁରେଇ ଉଖୁରେଇ ଉପରେ ପଡି ଅଧିକା କଥା ହେଲା ।

ଫିଲ୍ମ ପରଦା ଉପରେ ସେଇ ଗୋଲାପୀ ରଙ୍ଗର ଛବିଗୁଡା ଦେଖି ଦୁଗୁଳାର ଦେହ ଖାଲି କ'ଣ ହୋଇଯିବା ବେଳକୁ ବୁଢାଟା ଖାଲି ଡିଷ୍ଟ୍ରବ କରୁଥାଏ ।

କିଛି ସମୟ ଯାଇଛି କି ନାହିଁ ବୁଢାଟା ଆସ୍ତେ କିନା ଦୁଗୁଳାର ଜଙ୍ଘ ଉପରେ ହାତ ଥୋଇଦେଲା । ତା ପରେ ବୁଢାଟି ତାର ହାତ ସହାୟତାରେ କିଛି ଗୋଟା ଗୁପ୍ତ ପ୍ରକ୍ରିୟା ଚାଲୁ କରିବାକୁ ଆରମ୍ଭ କଲା । ଏହା ସହିତ ଦୁଗୁଳା ସାଙ୍ଗରେ ଫିଲ୍ମ ସମ୍ପର୍କରେ କିଛି କହିବା ପ୍ରକ୍ରିୟାଟା ମଧ୍ୟ ଚାଲୁ ରଖିଲା । ଏ ସମସ୍ତ ଘଟଣା ସମ୍ପର୍କରେ ଦୁଗୁଳା କିନ୍ତୁ କିଛି ନ କହି ମନେମନେ ରାଗୁଥାଏ ।

ଏହା ମଧ୍ୟରେ ଦୁଗୁଳା ନିଶ୍ଚିତ ହୋଇ ସାରିଲାଣି, ବୁଢାର ଉଦ୍ଦେଶ୍ୟ ଭଲ ନୁହଁ । ତେଣୁ ସେ କିଛି ଗୋଟା ସତର୍କତାମୂଳକ ପଦକ୍ଷେପ ନେବା ବେଳକୁ ସିନେମାଟା ସରିଯାଇଥିଲା ଏବଂ ଛବିରେ ଲେଖା ସରିଥିଲା ଦି ଏଣ୍ଡ ଏବଂ ହଲ୍‌ରେ ହିନ୍ଦୀ ଗୀତ ବାଜୁଥିଲା, ଲୋକମାନେ ଗୁଣୁଗୁଣୁ ଶବ୍ଦ କରି ଫେରୁଥିଲେ ।

ସେଦିନ ରାତିରେ ବୁଢା ଦୁଗୁଳାକୁ କହିଲା:



Digitized by srujanika@gmail.com

ଆଜି ଆଉ ଢାବାକୁ କାହିଁକି ଯିବୁ, ମୋ ପାଖରେ ରହିଯିବୁ । ନା କ'ଣ?

ଦୁଗୁଲାର ତ ସେତେବେଳକୁ ବୁଢା ଉପରେ ବିଶ୍ୱାସ ହୋଇଯାଇଥାଏ । ପୁଣି ବି ଢାବାକୁ ନ ଫେରିବାକୁ ଦୁଗୁଲା ଏକ ପ୍ରକାର ଦୃଢମନା ହୋଇ ସାରିଥାଏ । ତେଣୁ ଦୁଗୁଲା ଢାବାକୁ ଫେରିବାକୁ ମନା କରିଦେଲା । ବୁଢା ଦୁଗୁଲାକୁ ପାମ୍‌ଡ, ନଳୀ କିଣି ଦେଲା । ଦୁଗୁଲା ଖାଇଲା । ରାତିରେ ତା ଘରକୁ ନେଲା । ଦୁଗୁଲାର ତ ଢାବା ମାଲିକ ଉପରେ ରଗ ମୁଣ୍ଡକୁ ଚଢିଯାଇଥାଏ । ତେଣୁ ଢାବାକୁ ଆଉ ଫେରିବାକୁ ମନ କଲାନି ।

ବୁଢା ସାଙ୍ଗରେ ଦୁଗୁଲା ତା ଘରକୁ ଗଲା । ସେତେବେଳକୁ ରାତି ବାରଟା ବାଜି ସାରିଥାଏ । ବୁଢା ଘରେ ସେ ଏକା । ତାର କେହି ପିଲାଝିଲା ନାହାନ୍ତି । ବୁଢା ତ ମୂଳରୁ ବାହା ହୋଇନି । ପିଲାଝିଲା ଆସିବେ କେଉଁଠୁ? ଘରଟାରେ ଗୋଟିଏ ଖଟ ପଡିଛି । ଖଟ ଉପରେ ବିଛା ଯାଇଥିବା କଛାଟି ମଳି ତେଲ ଚିକିଟା ହେଇ ଢାମୁଳିଆ ଢାମୁଳିଆ ଗନ୍ଧଉଥାଏ । ମୋତେ ଏ ଗନ୍ଧରେ ଅଇ ଉଠେଇଲା । ଘରଟା ସାରା ନାସନା ମାସନା ହୋଇ ପଡିଛି ।

ବୁଢା ପେଣ୍ଟ ବଦଳେଇ ଗାମୁଛା ପିନ୍ଧିଲା ।ପାଣି ପିଇଲା । ଦୁଗୁଲା ଓ ବୁଢା ସାଙ୍ଗ ହୋଇ ସେଇ ଖଟରେ ଶୋଇଲେ । ବୁଢା ଏଣୁତେଣୁ ବାର କଥା ଗପିବା ଆରମ୍ଭ କଲା । ତା କଲେଜ ପାଠ ପଢା ବେଳେ କେମିତି କେତେ ଝିଅ ତାକୁ ଲାଇନ୍ ମାରୁଥିଲେ । କେମିତି ସେ ଥାନା ବାଲା ମାଇକିନାଟାକୁ ପଟେଇ ତାକୁ ଦିଇନ୍..... ଏବେ କେମିତି ଗୋଟା କଲେଜ ଟୋକୀ ତା ପାଲରେ ପଡିଛି, ନିଇତି ମାଗଣାରେ ଫିଲ୍ମ ଦେଖୁଛି ଇତ୍ୟାଦି ଇତ୍ୟାଦି କେତେ କ'ଣ ଗପିଲା ।

ଦୁଗୁଲାକୁ ନିଦ ମାଡିଲା ଏବଂ ହାଇ ମାରିଲାରୁ ବୁଢା ଲାଇଟ୍ ଲିଭାଇଲା । ଦୁଗୁଲା ଶୋଇ ପଡିଲା । ରାତି ଅଧରେ ଦେଖିଲା ବେଳକୁ ବୁଢା ଦୁଗୁଲାର ପେଣ୍ଟ ଖୋଲୁଛି । ପେଣ୍ଟ ଖୋଲି.... । ଇସ୍.. ।

ଏ ଘଟଣା ପରେ ଦୁଗୁଲା ବଡ଼ ପାଟିରେ କାନ୍ଦିଲା । କାନ୍ଦ ତ ଦୁଗୁଲାର ଆଗରୁ ଅଭ୍ୟାସ । ତେଣୁ ସକସକ ହୋଇ ସେ କାନ୍ଦିବାକୁ ଲାଗିଲା । ଏହାପରେ ବୁଢା ଦୁଗୁଲାକୁ ବୁଝାଇଲା । କାନ୍ଦିଲେ କ'ଣ ଲାଭ ହେବ ବୋଲି ବୁଢା ଦୁଗୁଲାକୁ କହିଲା । ବାହାରେ ରହିଲେ ଏମିତି ସବୁ ଚଳେ । ଏଇ ଟିକେ କଥାକୁ ନେଇ ଏତେ ସିରିୟସ ହେଲେ ଜୀବନରେ ଅଧିକ କିଛି କରି ହେବନି । ଆଉ ପୁଣି ବାହାରେ ଜାଗା, ବାହାର ପରିବେଶ । ଏମିତି ହେଲେ ବିଦେଶ କରିହେବନି । ଏସବୁ ଛୋଟିଆ ଛୋଟିଆ କଥା । ଏମିତି ଜୀବନରେ କେତେ ଥର ଘଟିବ । ଏବେଠୁ ଭାଙ୍ଗି ପଡିଲେ ଚଳିବ ନା? ଆଗରେ ଲମ୍ବା ଭବିଷ୍ୟତ ।

ବୁଢା ଦୁଗୁଲାକୁ ସାକୁଲେଇ ସାକୁଲେଇ କହିଲା:



Digitized by srujanika@gmail.com

ତତେ ଆସନ୍ତା କାଲିଠାରୁ ଏଇ ଫିଲ୍ମ ହଲ୍‌ରେ ଚାକିରି କରେଇ ଦେବି । ସେଇ ଢାବାରେ ରହି କେତେ ଟଙ୍କା ପାଉଛୁ କହିଲୁ । ଏଠି ଚାକିରି କରିବୁ । ମାସକୁ ପାଞ୍ଚ ଶହ ଟଙ୍କା । ମାଗଣାରେ ମୋ ପାଖରେ ରହିବୁ । ମୋ ପାଖରେ ବି ଖାଇବୁ । ମୋର ତ କେହି ନାହାନ୍ତି । ମୋ ପୁଅ ଭଳି ଚଳିବୁ । ତୁ ଯାହା ରୋଜଗାର କରିବୁ ସବୁତକ ଟଙ୍କା ଘରକୁ ପଠେଇବୁ । ଫିଲ୍ମ ହଲ୍ ମାଲିକଙ୍କ ଘରେ ଗୋଟେ ସୁନ୍ଦରିଆ ଚାକରାଣୀ କାମ କରୁଛି । ତା ନାଁ ମିତା । ଶିଲ୍ପା ଶେଟ୍ଟୀ ଭଳିଆ । ରାଣୀ ମୁଖାର୍ଜୀ ତ ତା ଆଗରେ କିଛି ନୁହେଁ । ଦେଖିବା ନ ହେଲେ ତାକୁ ତୋ ସାଙ୍ଗରେ ବିଭା କରେଇ ଦେବା । ତୁ ବେଶ୍ ଆରାମରେ ରହିବୁ । ତୁ ତ ମୋର ପୁଅ ହୋଇ ରହିବୁ । ....

ସେତିକି ବେଳେ ଏ ବୁଢ଼ାଟା ଲାଗୁଥିଲା ତାର ସେଇ ନିଶୁଆ ବାପା ଭଳି. ରାକ୍ଷସ ରାକ୍ଷସ । ଯିଏ ମଦ ନିଶାରେ ତା ବୋଉକୁ ପିଟିପିଟି ମାରି ଦେଇଥିଲା । ଆଉ ତା ପାଠ ପଢ଼ା ବନ୍ଦ କରି ଦେଇଥିଲା ।

'କି ବାପା ବେ? ମୋର ବାପା ଫାପା ଦରକାର ନାହିଁ ।' କହିଲା ତ ହୁଗୁଳା ଦଉଡ଼ିଲା । କେଉଁଠିକୁ ଦଉଡ଼ିଲା ସେ ବି ଜାଣି ନଥିଲା । କିନ୍ତୁ ଦଉଡୁଥିଲା ।

କ୍ରମଶଃ ସମୟ ବୟସ୍କ ହେଉଥିଲା ।

□



Digitized by srujanika@gmail.com

# ଛାତ ଉପରୁ ନିଜକୁ ଆବିଷ୍କାର କରି







Digitized by srujanika@gmail.com

ଜିନିଷଟି କିଣିଲାବେଳେ ତାକୁ କେହି ଜଣେ ବି ଦେଖି ନାହାନ୍ତି ଭାବି ପୋତା ମନେମନେ ଆଶ୍ୱସ୍ତ ହେଉଥିବ । ଜିଣିଷ ତ କିଣା ସରିଲା, ଚାଲ୍, ଏଠୁ ଶୀଘ୍ର ଭାଗ୍, ଏହା ଭାବି ପୋତା ସେହି ସ୍ଥାନ ପରିତ୍ୟାଗ କରୁଥିବ । ପୁଣି ସାମାନ୍ୟ ପଛକୁ ଦୋକାନ ଓ ଏହାର ଆଖପାଖ ଅଞ୍ଚଳକୁ ବୁଲି ଚାହୁଁଥିବ । କାଳେ କିଏ ତାକୁ ଲକ୍ଷ୍ୟ କରୁଥିବ, ଏହା ଭାବି ପୋତା ଜୋର୍ ଜୋର୍ ପାଦ ପକାଇ ଏକ ପ୍ରକାର ଦଉଡିବାକୁ ଆରମ୍ଭ କରି ଦେଇଥିବ ।

ସଦ୍ୟ କିଣିଥିବା ବହିଟିକୁ ସାର୍ଟ ତଳେ, ଗଞ୍ଜି ଭିତରେ, ତଳି ପେଟ ଓ ଲିଙ୍ଗର ମଧ୍ୟ ଭାଗରେ ଖୋସି ପୋତା ଧୀରେଧୀରେ, ଆସ୍ତେଆସ୍ତେ ଓ ସର୍ବୋପରି ଜୋର୍‌ରେ ଚାଲୁଥିବ କିମ୍ବା ଦୌଡୁଥିବ । ଯେମିତି ହେଉ, ସନ୍ଧ୍ୟା ପୂର୍ବରୁ ତାକୁ ଗାଁରେ ପହଞ୍ଚିବାକୁ ହେବ ।

ଗଞ୍ଜି ଓ ପ୍ୟାଣ୍ଟ୍ ଭିତରେ ଆତ୍ମଗୋପନ କରିଥିବା ହଳଦି ରଙ୍ଗର ସେହି ଜରି ଗୁଡା ଗରମ ବହିଟି ବେଳେବେଳେ ପୋତାର ଲିଙ୍ଗକୁ ସ୍ପର୍ଶ କରି ଦେଉଥିବ । ପୋତା ଶିହରି ଉଠୁଥିବ । କାଳେ, ବହିଟି ତଳକୁ ଖସି ପଡ଼ିବ, ପୋତା ସେଥିନେଇ ଖୁବ୍ ସତର୍କ ହୋଇ ପଡୁଥିବ । ବହିଟି ଝାଳରେ ଓଦା ହୋଇଯିବ ବୋଲି ପୋତାର ଭୟ ନଥିବ । କାରଣ ବହିଟି ଉପରେ ହଳଦି ରଙ୍ଗର ବଢ଼ିଆ ଜରିଟିଏ ଗୁଡା ହୋଇଥିବ । ଏହା ପୋତାକୁ ଅନେକ ମାତ୍ରାରେ ନିର୍ଭୀକ ଓ କେୟାର୍‌ଲେସ୍ କରି ଦେଇଥିବ ।

ପେଙ୍କେଇ ପେଙ୍କେଇ ପୋତା ବାଦାମବାଡି ବହି ଦୋକାନରୁ କିଛି ଦୂରରେ ଠିଆ ହୋଇଥିବା କଟକ-ପଟ୍ଟାମୁଣ୍ଡେଇ ବସ୍ ପର୍ଯ୍ୟନ୍ତ ଚାଲୁଥିବ । ଆଉ କୋଉଠିକୁ ନ ଅନେଇ ପୋତା ସିଧା ଯାଇ ବସ୍‌ରେ ବସୁଥିବ । ବାରଟା କୋଡିଏ ମିନିଟ୍‌ରେ ବସ୍ ଛାଡିବାକୁ ଥିବ । ଗାଁରେ ପହଞ୍ଚିଲା ବେଳକୁ ସଞ୍ଜ ହୋଇଯିବ । ପୋତା ବେସ୍ତ ହୋଇ ପଡୁଥିବ । ତାକୁ ବାରମ୍ବାର ଝାଡା, ପରିସ୍ରା ଲାଗୁଥିବ ।

ବସ୍‌ର ସାଇଡ୍ ଝର୍କା ପାଖ ସିଟ୍‌ରେ ବସି ପୋତା ନିଜ ଦେହର ଅନ୍ଦର ମହଲରେ ଲୁଚେଇ ରଖିଥିବା ସେହି ବହିଟି ସମ୍ପର୍କରେ କେତେ କ'ଣ ଭାବି ଯାଉଥିବ । ବହିଟିର କଭର୍ ପୃଷ୍ଠାରେ ଥିବା ବିନା ଡ୍ରେସ୍‌ରେ ସେହି ପତଳି ଲାଲ୍ ରଙ୍ଗର ବିଦେଶୀ ଝିଅଟିର ଫଟୋଟିକୁ ଦେଖି ସାରିବା ପରଠୁଁ ପୋତାର ତଳି ପେଟ ତୁହାକୁ ତୁହା ବିନ୍ଧି ପକାଉଥିବ । ମିନିଟିଏ ଛାଡି ମିଣ୍ଟିଏକୁ ତାକୁ ପରିସ୍ରା ଲାଗୁଥିବ । ବହିଟିରେ ସଯତ୍ନର ସହ ହଳଦି ରଙ୍ଗର ଜରିଟି ଗୁଡାଯାଇଥିବାରୁ ସେ କଭର୍ ଫଟୋଟି ଅଧିକ ଆକର୍ଷଣୀୟ ଲାଗୁଥିବ । ବହିଟିକୁ ପେଣ୍ଟ୍ ଭିତରୁ କାଢ଼ି ଟିକେ ଦେଖିବାକୁ ପୋତାର ଇଚ୍ଛା ହେଉଥିବ, ମାତ୍ର ଏତେ ଲୋକଙ୍କ ଆଗରେ ଏହା କ'ଣ ଦେଖିହେବ, ଭାବି ପୋତା ଅନ୍ୟମନସ୍କ ହୋଇ ପଡୁଥିବ ଓ ଚୁପ୍‌ଚାପ୍ ଗାଁ କଥା ଭାବୁଥିବ ।



Digitized by srujanika@gmail.com

ପୋତାର ନିଜ କଲେଜ ଝିଅ ତଅପୋଇ କଥା ମନକୁ ଆସୁଥିବ । କଣ୍ଟା ବଣ ଭଳି ଏକ ଗାଉଁଲି କଲେଜରେ ତଅପୋଇ ଭଳି ଝିଅ, ପଙ୍କ ଗଡ଼ିଆରେ ପଦ୍ମ ଭଳି ପ୍ରତୀୟମାନ ହେଉଥିବ । ହେଲେ ତଅପୋଇ ନିଇତି ସଜ ହୋଇ ମେକପ୍ ନେଇ ପଟ୍ଟାମୁଣ୍ଡେଇଠାରୁ ଆରମ୍ଭ କରି କେନ୍ଦ୍ରାପଡା, ଦୁହୁରିଆ, ଚାନ୍ଦୋଳ ଆଦି ସ୍ଥାନକୁ ନିୟମିତ ଯାଉଥିବ । କୁଆଡେ ସେ ଧନ୍ଦା କରୁଥିବ । ଗୁଡାଏ କୁତ୍ସା ଗୁଜବ ତା' ନାଁରେ ରଟୁଥିବ । ପୋତାର ଏହା ବିଶ୍ୱାସ ହେଉ ନଥିବ ।

ପୋତା ଦୁଇ ଆଖି ବୁଜି ଦେଉଥିବ । ଆଖି ବୁଜିଲା ମାତ୍ରେ ତଅପୋଇର ଗୋରା ଗୋରା ହାତ, ଜଂଘ ପୋତା ସାମ୍ନାରେ ନାଚି ଉଠୁଥିବ । ଗୋଟିଏ ପରେ ଗୋଟିଏ ପୋଷାକ ତଅପୋଇ ଖୋଲି ଚାଲୁଥିବ । ପୋତାର ତଳି ପେଟ ବିନ୍ଧି ପକାଉଥିବ । ପେଟର ଠିକ୍ ତଳକୁ ଧମ୍ ଧମ୍ ଶବ୍ଦ କରି କ୍ରମେ ପୋତାର ମୁଣ୍ଡ ଘୁରାଇ ପକାଉଥିବ । ପୋତା ସିଟ୍ ଉପରେ ଘାଲେଇ କି ପଡି ଯାଉଥିବ । ଏତିକି ବେଳକୁ ବହିଟି ପେଟରୁ ସାମାନ୍ୟ ତଳକୁ ଖସି ପୁନର୍ବାର ତା' ଲିଙ୍ଗକୁ ଛୁଇଁ ଦେଉଥିବ । ପୋତା ଚମ୍କି ପଡୁଥିବ । ପୋତା ଜାଗ୍ରତ ହୋଇ ପଡୁଥିବ । ପୋତା ପୁଣି ବହିଟିକୁ ଟେକି ପେଟ ଉପରକୁ ଆଣୁଥିବ ।

ପୋତାର ପାଖ ସିଟ୍‌ରେ ବୁଢା ଲୋକଟିଏ ବସିଥିବ । ସେ ହାରାମୀ ବୁଢାଟା ରାଶୀଫଳ ବହିଟିଏ ଧରି ସ୍ଥିର ଚିତ୍ତରେ ସାଇନ୍‌ସ ଷ୍ଟୁଡେଣ୍ଟ୍‌ଙ୍କ ଭଳି ଅସରପା ନଣ୍ଟି ଭଳି ଗନ୍ଧୋଉଥିବା ସେ ବହିଟିକୁ ପିଇ ଯାଉଥିବ । କଟକ-କେନ୍ଦ୍ରାପଡା ରାସ୍ତାର ମଝିରେ ମଝିରେ ଥିବା ଅପ୍ରାକୃତିକ ଖାଲଖମାରେ ପଡି ଗାଡିଟି ଉପରକୁ ଡେଇଁ ପଡୁଥିବ ଏବଂ ବହିକୁ ବଗ ଭଳି ଚାହିଁଥିବା ଭାବଭୋଳ ବୁଢାଟା ତା ଉପରକୁ ଆଉଜି ଆସୁଥିବ । କ'ଣ ଘରକୁ ଯାଇ ନିରୋଳାରେ ପଢିଲେ ହୁଅନ୍ତା ନି, ଭାବି ପୋତା, ବୁଢାଟା ଉପରକୁ ରାଗିକି ଗରଗର ହେଉଥିବ । ମାତ୍ର କିଛି କହି ପାରୁ ନଥିବ । ଏଣେ ବସ୍‌ଟିରେ ଆଳୁ ବସ୍ତା ଭଳି ଲୋକ ଲଦି ହୋଇଥିବେ ଓ କାହାର ମୂଲ୍ୟବାନ ପିଚାରୁ ପଚା ଗନ୍ଧଯୁକ୍ତ ପବନଟିକେ ଲିକ୍ କରି ସାରା ବସ୍‌ଟି ଭିତରେ ଖେଳି ବୁଲୁଥିବ । ଇସ୍, ଇସ୍, କି...ଗନ୍ଧଃ..ଃ...... ଯିଏ ପାଦିଛି, ତା ଗାଣ୍ଡି ଛିଣ୍ଡୁ, ପୋକ ପଡୁ, ଲୋକ ଦେଖନ୍ତୁ.. ଜଣେ ମୋଟି ସ୍ତ୍ରୀ ଲୋକଟି ରାଗି ତମ୍‌ତମ୍ ହେଉଥିବ । ବସ୍‌ର ଝରକା ଖୋଲି ଥୁଃ.. ଥୁଃ... ଥୁଃ... କରି ଛେପ ପକାଉଥିବ । ଗନ୍ଧରେ ପୋତାର ଦେହ ବୁଲେଇ ପକାଉଥିବ ଓ ବାନ୍ତି ଉଠାଉଥିବ । ଏ ଶଳା, ଗନ୍ଧିଆ ବୁଢାଟା ସନ୍ତର୍ପଣରେ ନିଶ୍ଚୟ ଏହି କାଣ୍ଡ ଘଟାଇଥିବ ବୋଲି ପୋତା ମନେମନେ ନିଶ୍ଚିତ ହୋଇ ଯାଉଥିବ । ବୁଢାଟା ଘଡିକି ଘଡି ପୋତା ଉପରକୁ ଡେରି ହୋଇ ପଡୁଥିବ ।

ପୋତା ଅନ୍ୟମନସ୍କ ହୋଇ ପୁଣି ସେହି ବହିର କଭର ପୃଷ୍ଠାରେ ନିମଗ୍ନ ହୋଇ ଯାଉଥିବ । ବହିଟିର କଭର ପୃଷ୍ଠା ର ସେହି ଲଙ୍ଗଳା ଝିଅଟିକୁ ଦେଖିବା ବେଳୁ ପୋତା ଶରୀରର ସମସ୍ତ ପ୍ରକ୍ରିୟା



Digitized by srujanika@gmail.com

ବିଗିଡ଼ି ଯାଇଥିବ । ତୁରନ୍ତ ଘରେ ପହଞ୍ଚି ବହିଟି ସମ୍ପର୍କରେ ଗବେଷଣା ଆରମ୍ଭ କରିଦେବାକୁ ଇଛା ହେଉଥିବ । ମାତ୍ର ଦରବୁଢା ବସ୍‌ଟି କୁଢେଇ କୁଢେଇ ଚାଲୁଥିବ । କଟକରୁ ପଞ୍ଚାମୁଣ୍ଡେଇ ତାକୁ ପୃଥିବୀରୁ ମଙ୍ଗଳ ଗ୍ରହ ଭଳି ଲାଗୁଥିବ । ପୋତା ହତାଶ ହୋଇ ପଡୁଥିବ ।

ଏତିକି ବେଳକୁ ପ୍ଲସ୍ ଟୁ ଫାଇନାଲ୍ ପରୀକ୍ଷା ପାଇଁ ଫର୍ମ ଫିଲପ୍ ସରି ଯାଇଥିବା କଥା ପୋତାର ମନେ ପଡି ଯାଉଥିବ ଓ ପୋତା ସଙ୍କି ଯାଉଥିବ । ଇକୋନୋମିକ୍ସ ଓ ସୋସିଓଲୋଜର ଥିଓରିଗୁଡିଏ ତାର ଆଦୌ ମନେ ରହୁ ନଥିବ । ଏଗୁଡା ବାଜେ ସବ୍‌ଜେକ୍ଟ ବୋଲି ପୋତା ବିରକ୍ତ ହେଉଥିବ ।

ଗାଁକୁ ଫେରି, ଘରେ ପାଦ ଦେଉଦେଉ, ତୁରନ୍ତ ସାର୍ଟପ୍ୟାଣ୍ଟ୍ ବଦଳେଇ, ଗୋବରୀ ନଈ କୂଳକୁ ଆଗେ ଝାଡା ଚାଲିଯିବ ବୋଲି ପୋତା ବସ୍‌ରେ ଥାଇ ପ୍ଲାନ୍ କରି ସାରିଥିବ । ବହିଟିକୁ ଦେଖିବା ପରଠାରୁ ପୋତା ଅସମ୍ଭାଳ ହୋଇ ପଡୁଥିବ । ଦୁନିଆରେ ଏମିତି ଏକ ସୁଖକର କାମକୁ ଖୁବ୍ କମ୍ ବୟସରୁ ଶିଖି ନେଇଥିବାରୁ ପୋତା ପୁଣି ଥରେ ଉଲ୍ଲସିତ ହୋଇ ପଡୁଥିବ । ନିଜକୁ ଅତି ସ୍କଲାର ମଣୁଥିବ ।

ତା' ବୟସର ଏମିତି କୋଉ ପିଲା, ପୁଣି କଣ୍ଟାବଣ ଭଳି ଏକ ଅପନ୍ତରା ଗାଇଡରୁ କଟକ ଆସିଥିବ, ଏ କଥା ଭାବି ପୋତା ନିଜକୁ ଅଧିକ ଗର୍ବୀ ମନେ କରୁଥିବ । ଏ ଶଳା, ଦୁନିଆ ପ୍ରସିଦ୍ଧ ବାଦାମବାଡି, ଯାହାର ନାଁ ସେ ପୂର୍ବରୁ ଅନେକବାର ଶୁଣିଥିବ, ସେହି ବସ୍ ଷ୍ଟାଣ୍ଡରୁ ଏଭଳି ହଳଦି ରଙ୍ଗର ଜରିଗୁଡା ବହି କିଣିପାରିଥିବାରୁ ପୋତା ପୁଣି ଆତ୍ମସନ୍ତୋଷ ପ୍ରକାଶ କରୁଥିବ ।

ଧୁତ୍, ଏ ବସ୍‌ଟା କେବେ କୋଉ ଯୁଗରେ ଯାଇ ପଞ୍ଚାମୁଣ୍ଡେଇରେ ପହଞ୍ଚିବ, ପୋତା ବ୍ୟସ୍ତ ହୋଇ ପଡୁଥିବ । ଘଡି ଘଡି ପରିସ୍ରା ମାଡୁଥିବ । ତଳି ପେଟ ବିନ୍ଧି ପକାଉଥିବ । ମାତ୍ର ତାର ପ୍ରିୟ ଯୌନାଙ୍ଗ ଦେଇ ବାହାର ଦୁନିଆ ଦେଖିବାର ଅପେକ୍ଷାରେ ଥିବା ଗନ୍ଧିଆ ପରିସ୍ରାକୁ ଯଥାକଥା ଅଟକେଇ ଦେବାରେ ସେ ସମର୍ଥ ହୋଇଥିବ ।

ଗାଁ ଗୋବରୀ ନଈ କୂଳର କିଆ ବୁଦା ମୂଳର ଅନୁଭୂତି; ଉଃ.. କି ମଜା । ଦେହ ଥରି ଉଠୁଥିବ । ଗୋବରୀ ନଈ କୂଳରେ ସେ ଏକୁଟିଆ ବୁଲିଲା ବେଳେ ତାକୁ କେହି ସନ୍ଦେହ କରୁଥିବେ କି? ନା, କିଏ କାଇଁ କ'ଣ ଭାବିବ । ପଢିପଢି କରି ବୋର୍ ହୋଇଯାଇଥିବାରୁ ପିଲାଟା ଘଡିଏ ଖୋଲା ପବନ ଖାଇବାକୁ ନଈ କୂଳକୁ ଚାଲି ଆସିଥିବ । କେଇ କୁଆଡେ ନଥିବାବେଳେ, ପୋତା ତାର ସବୁଠୁ ବିଶ୍ୱସ୍ତ ଅନ୍ଧାରିଆ କିଆ ବୁଦା ମୂଳକୁ ଚାଲି ଯାଉଥିବ । ସେଠି ଝାଡା ବସିବାର ବାହାନା କରୁଥିବ । ଯିଏ ବି ସେଇ ବାଟ ଦେଇ ଯାଉଥିବେ, ପିଲାଟା ଝାଡା ବସିଛି ଭାବି ତା'ଠାରୁ ଧ୍ୟାନ ଫେରାଇ ନେଉଥିବେ । ଏହା ପୋତାକୁ ଆଉ କିଛି ସମୟ ସେଠି ବସି ରହିବାକୁ ଭରସା ଦେଉଥିବ । ପୋତା ନିଜକୁ ଏନ୍‌ଜୟ କରୁଥିବ ।



Digitized by srujanika@gmail.com

ପୋତା ଏମିତି କେତେ ଥର କଲେଜ ଆସିବା ବାହାନାରେ ପଟ୍ଟାମୁଣ୍ଡେଇ ବସ୍‌ରେ ବସି କଟକ ଚାଲିଆସିଥିବ । ସନ୍ଧ୍ୟା ହେବା ପୂର୍ବରୁ ପୁଣି ସେହି ବସ୍‌ରେ ବସି ନିଜ ଗାଁକୁ ଫେରି ଯାଇଥିବ । ତା ପାଇଁ ଏହି କଟକ ଆସିବା ଘଟଣା, ପବନପୁତ୍ର ହନୁମାନଙ୍କ ଲଙ୍କା ଅଭିଯାନ ଭଳି ହୋଇଥିବ । ତା ଗାଁର ତା ବୟସର କୋଉ ପିଲା କଟକ ଦେଖି ନଥିବେ, ଏହା ଭାବି ପୋତା ନିଜକୁ ଅଧିକ ବ୍ରେନି ଭାବୁଥିବ ।

ବେଳେବେଳେ କଣ୍ଟାବଣ ଭଳି ଏକ ତଳଘଟି ଅଞ୍ଚଳରୁ ପୋତା ପଟ୍ଟାମୁଣ୍ଡେଇ ବଜାରକୁ ବୁଲି ଆସୁଥିବ । ପଟ୍ଟାମୁଣ୍ଡେଇ ବସ୍ ଷ୍ଟାଣ୍ଡ ନିକଟରେ ଠିଆ ହୋଇଥିବାବେଳେ ପୋତାର ଗୋଟିଏ ଅଦ୍ଭୁତ ଖିଆଲ ସୃଷ୍ଟି ହୋଇଥିବ । ବସ୍ ଷ୍ଟାଣ୍ଡରୁ ଏକ ବସ୍ କଟକ ଛାଡୁଥିବ । ପଟ୍ଟାମୁଣ୍ଡେଇରୁ କଟକକୁ ଛାଡିବାକୁ ଥିବା ସେହି ବସ୍‌ଟି ଉପରକୁ ପୋତା ହଠାତ୍ ଉଠି ଯାଉଥିବ । ଧାନ ବିକା ଟଙ୍କାରୁ କିଛି ପକେଟ୍‌ରେ ମହଜୁଦ ଥିବାରୁ ପୋତାର କିଛି ଚିନ୍ତା ନଥିବ । କଟକ ଯାଇକି ବୁଲାବୁଲି କରି ଆସିଲେ କିଛି ଅସୁବିଧା ହେବନି ବୋଲି ପୋତାର ମୁଣ୍ଡକୁ ଏକ ଆଇଡିଆ ଢୁକୁଥିବ ।

କଣ୍ଟାବଣରୁ ପଟ୍ଟାମୁଣ୍ଡେଇ, ପୁଣି ପଟ୍ଟାମୁଣ୍ଡେଇରୁ କଟକ; ଏକ ଲମ୍ବା ଯାତ୍ରା ସମ୍ପର୍କରେ ଭାବିଭାବି ପୋତା ଉଲ୍ଲସିତ ହୋଇ ପଡୁଥିବ । ସେ ଏବେ କଟକରେ ପହଞ୍ଚି ଯାଇଛି ବୋଲି ବଡ଼ ପାଟି କରି ତାର ପ୍ରିୟ ଗାଁବାସୀଙ୍କୁ ଜଣେଇ ଦେବାକୁ ଚାହୁଁଥିବ । ଗାଁର ବିଚାରୀ ରାଉଳି, ଗୁରୁବାରୀ, ନେଉଳି, ସୀତା, ପମି, ଉମିଙ୍କ କଥା ଭାବି ପୋତା ସେମାନଙ୍କୁ ଦୟା କରୁଥିବ । କଟକରେ ସ୍କୁଟି ଚଲେଇ ମାଡି ଯାଉଥିବା ଝିଅଙ୍କୁ ଦେଖି ପୋତା ହାଁ କରି ଅନେଇ ରହୁଥିବ । ଗାଁର ଟାଂଗା, ଟେରା, ଜାଗରା, ଶିବା, ମୂଲା ଓ ସର୍ବୋପରି ସେ ନିଜେ 'ପୋତା'; ଏମାନଙ୍କ ସମ୍ପର୍କରେ ଭାବି ଦୁଃଖ ପ୍ରକାଶ କରୁଥିବ । କେଡ଼େ ଗାଉଁଲି ମଫସଲିଆ ଟୋକାମାନେ, ଗାଁରେ ରହି, ଗାଈ ଚରେଇ, ବିଲରେ ଖଟି, ତାସ୍ ଖେଳି, ପିଣ୍ଡାରେ ବସି, ଆ' ତା' କଥା ଗପି ଦୁନିଆ ସମ୍ପର୍କରେ କିଛି ଜାଣି ପାରୁ ନଥିବେ ।

ନିଜକୁ ଏବେ ଗାଁଠାରୁ ବେଶ୍ ଦୂରରେ ଦେଖି ପୋତା ଭାବବିହ୍ୱଳ ହୋଇ ପଡୁଥିବ ।

ଗାଁରେ ପ୍ରଥମ ମେଟ୍ରିକ୍ ପାସ୍ କରିପାରିଥିବାରୁ ପୋତା ନିଜକୁ ଅନ୍ୟମାନଙ୍କଠାରୁ ଅଲଗା ଭାବୁଥିବ । ଥାର୍ଡ ଡିଭିଜିନରେ ହେଉ ବରଂ ସେ ମାଟ୍ରିକ୍ ପାସ୍ କରି କଣ୍ଟାବଣ କଲେଜରେ ପ୍ଲସ୍ ଟୁରେ ନାଁ ଲେଖେଇ ପାରିଥିବ । ଏଣୁ ସେ ନିଜକୁ ବହୁତ ଭାଗ୍ୟବାନ ମଣୁଥିବ । ନାତୀ ଟୋକା, ମେଟ୍ରିକ୍ ପାସ୍ କରିଥିବା ଖୁସିରେ ଜେଜେ ଗାଁବାଲାଙ୍କୁ ଏକ ବଡ଼ ଧରଣର ଭୋଜି ଦେଇଥିବେ । ବୋଉ, ବୁଢି ଠାକୁରାଣୀଙ୍କୁ ବୋଦାଟିଏ ପୂଜିଥିବ ଓ କଳା ଛିଟଟିଏ ଦେଇଥିବ ।

ପୋତା ଏବେ କଟକରେ ପହଞ୍ଚି ଯାଇଥିବାରୁ ଗାଁର ସବୁକିଛି ଭୁଲି ଯାଉଥିବ । ଗାଁର ମୂର୍ଖ ପିଲାମାନେ ତା ଠାରୁ କେତେ ଦୂରରେ କାହିଁ ଅପନ୍ତରା ମଫସଲରେ ପଡିଛନ୍ତି, ପୋତା ଗର୍ବରେ



Digitized by srujanika@gmail.com

ଫୁଲି ଉଠୁଥିବ ।

ଗତ ଦୁଇ ମାସ ଭିତରେ ପୋତା, ତିନି ଥର କଟକ ଆସି ସାରିଥିବ । ଆଉ ତିନି ଖଣ୍ଡ ଛବି ଲଗା ରଙ୍ଗୀନ୍ ବହି କିଣି ନେଇଥିବ । ପ୍ରଥମ ଥର ସେ ନିଶାମଣି ଟକିଜ୍‌ରେ ଇଂଲିଶ୍ ଫିଲ୍ମ ଦେଖିପାରିଥିବାରୁ ସେ ଆଉ ଗାଁ ପିଲାଙ୍କ କଥା ମନେ ପକାଇ ପାରୁ ନଥିବ । ନିଶାମଣି ଟକିଜ୍‌ର ଗୁଡ୍‌ଗାବ୍, ଢୋ, ଢାଡାଙ୍ଗ୍ ଶବ୍‌ଦରେ ପୋତାର ଛାତି ଧଡ଼ପଡ଼ ହୋଇ ପଡୁଥିବ । ପୋତା ରୋମାଞ୍ଚିତ ହୋଇ ପଡୁଥିବ ।

ଏହା ମଧ୍ୟରେ ବାଦାମବାଡି ବସ୍ ଷ୍ଟାଣ୍ଡ ସହିତ ପୋତାର ବନ୍ଧୁତ୍ୱର ଡୋରି ଲାଗି ଯାଇଥିବ । ଗୋବରୀ ନଈ କୂଳରେ ଥିବା ତା ପ୍ରିୟ କିଆ ବୁଦାର ଉହାଡ଼ ଭଳି ଏହି ବାଦାମବାଡିର ରଙ୍ଗୀନ୍ ବହିଗୁଡିକ ତାକୁ ଆକର୍ଷିତ କରୁଥିବେ । ପୋତା, ବାଦାମ ବାଡି ବସ୍ ଷ୍ଟାଣ୍ଡରୁ ବହୁ ପ୍ରକାର ବହି କିଣି ସାରିଥିବ । ଏତେ ଟଙ୍କା ଦେଇ ବହି କିଣି ନେଉଥିବ, ହେଲେ ମନ ଭରି ପଢିବା ପାଇଁ ତାକୁ ନିରୋଳା ଜାଗା ଖଣ୍ଡେ ମିଳୁ ନଥିବ । ଏହି ଦୁର୍ଭାଗ୍ୟ ପାଇଁ ପୋତା ଗାଁ ଲୋକଙ୍କ ଉପରକୁ ଚିଡ଼ି ଯାଉଥିବ । ଗାଁ ଓ ତାର ପରିବାର ଲୋକମାନେ, ଏ ବହିଗୁଡିକୁ, ତାକୁ ଭଲ ଭାବେ ପଢିବାର ସୁଯୋଗ ଦେଉ ନଥିବାରୁ, ପୋତା ସେମାନଙ୍କ ଉପରକୁ ବିଗିଡ଼ି ଯାଉଥିବ ।

କେତେବାର ପୋତା ଲୁଚେଇ ଲୁଚେଇ ବହିଟିକୁ ସାର୍ଟ ଭିତରେ ପୁରେଇ ଗୋବରୀ ନଈ କୂଳକୁ ଆସିଥିବ । ହେଲେ ସେଠି ବି ତାକୁ ରାହୁ, କେତୁ, ଯମ ଆଦି କାଳଗ୍ରହମାନେ ଘେରି ବସିଥିବେ । ଶୀତ ଦିନେ ଦ୍ୱିପହରିଆ ସମୟରେ ଖରାରେ ବସି ଟିକେ ଆନନ୍ଦରେ ବହିଟିକୁ ପଢିବା ପାଇଁ ପୋତା ନଈ କୂଳକୁ ଧାଇଁ ଆସିଥିବ । ହେଲେ ସେଠି କିଏ ଆଳୁରେ ପାଣି ଦେଉଥିବ ତ କିଏ ବାଇଗଣ, କଖାରୁ, କୋବି, କନ୍ଦମୂଳ କିଆରୀକୁ ଜଗି ବସିଥିବ । ପୋତା ସୁଯୋଗ ନ ପାଇ ମନ ଦୁଃଖରେ ଘରକୁ ଫେରି ଆସୁଥିବ ।

କୋଉଠୁ କିଛି ଉପାୟ ନ ପାଇ ପୋତା, ନିଜ ସାଇକେଲ୍ ଚଢି ରାଜନଗର ଆଡକୁ ବୁଲି ପଳାଉଥିବ । ଏ ବହିସବୁ ପଢିଲା ଦିନୁ ପୋତା ଏକ ପ୍ରକାର ବାରବୁଲା ଧରି ଯାଇଥିବ । କୋଉଠି ସ୍ଥିର ହୋଇ ଘଡ଼ିଏ ବସି ରହିବାକୁ ତାକୁ ଭଲ ଲାଗୁ ନଥିବ । କୋଉଠି, ଟିକେ ନିରୋଳାରେ ମନଭରି ବହିଟିକୁ ପଢିବା ପାଇଁ ତାର ଭାରି ଇଚ୍ଛା ହେଉଥିବ ।

ନିଜ ଗାଁଠାରୁ ରାଜନଗର ଦେଇ ସେ ଅନେକ ଦୂରକୁ ଚାଲି ଆସିଥିବ । ନିଶୂନ୍ ନିସ୍ତବ୍ଧ ଭେତା ମଧ୍ୟ ଦେଇ ଯାଇଥିବା ଫାଙ୍କା କେନାଲ୍ ବନ୍ଧ ରାସ୍ତା ଉପରେ ତାର ସାଇକେଲଟି ଗଡି ଚାଲିଥିବ । କୋଉଠି ଭଲ ନିରୋଳା ଜାଗାଟିଏ ମିଳିପାରିବ, ପୋତା ସେ ସନ୍ଧାନରେ ଥିବ ।

ହଠାତ୍ ଗୋଟିଏ ବଡ଼ ବରଗଛକୁ ଘେରି ଝଙ୍କଲିଆ ବୁଦା, ତା ନଜରରେ ପଡୁଥିବ । ପୋତା



Digitized by srujanika@gmail.com

ସେଇଠି ସାଇକେଲ୍‌କୁ ଷ୍ଟାଣ୍ଡ କରୁଥିବ । ସେ ଘଇଚାମାରି ପାଟରେ ଜଣେ ବି ଲୋକବାକ ଦେଖା ଯାଉ ନଥିବେ । ଗହଗା ଭେଡ଼ାରେ ଜଣେ ହେଲେ ମଣିଷ କି ପଶୁପକ୍ଷୀଙ୍କୁ ନ ଦେଖି ପୋତା ବେଶ୍ ଆଶ୍ୱସ୍ତ ଅନୁଭବ କରୁଥିବ । ଏଠିକି କେହି ବି ଲୋକ ଆସିବାର ସମ୍ଭାବନା ନଥିବା କଥା ପୋତାର ହୃଦ୍‌ବୋଧ ହେଉଥିବ । ଏହା ପରେ ସେ ସାଇକେଲରୁ ଓହ୍ଲାଉଥିବ । ସ୍ଥାନଟିକୁ ଭଲ ଭାବେ ଯାଞ୍ଚ କରି ନେଇ ସାରିବା ପରେ ସେ ଅନ୍ଧାରିଆ ବୁଦା ମୂଳକୁ ବହିଟିକୁ ଧରି ଚାଲି ଯାଉଥିବ ।

ପୋତା ବେଶ୍ କିଛି ସମୟ ବହିଟିର କଭର ପୃଷ୍ଠାକୁ ଅପଲକ ନୟନରେ ଚାହିଁ ରହୁଥିବ । ଇସ୍, ଏଠି କେତେ ଶାନ୍ତି, ବରଗଛର ଶୀତଳ ଛାଇ ତାକୁ ବେଶ୍ ଆନନ୍ଦଦାୟକ ହେଉଥିବ । ସ୍ଥାନଟା ତାକୁ ସ୍ୱର୍ଗ ପରି ଲାଗୁଥିବ । ଶଃ, ହାରାମୀ ଗାଁ ଲୋକେ ତାକୁ ଏତିକି କରିବାର ସୁଯୋଗ ଦେଉ ନଥିବେ । ପୋତା ସେମାନଙ୍କର ମା, ଭଉଣୀ ତେପନ ପୁରୁଷ ଉଦ୍ଧାର କରୁଥିବ । ଗାଁ ଟୋକାମାନଙ୍କଠାରୁ ଶିଖିଥିବା ବଛିଆ ବଛିଆ ଦୋ' ଅକ୍ଷରୀମାନ ପ୍ରୟୋଗ କରୁଥିବ ।

କିଛି ସମୟ ପରେ ପୋତା, ବହିଟିର ପ୍ରଥମ ପୃଷ୍ଠା ଓଲଟାଉଥିବ । ବହିଟିର ଲେଖକ କିଏ, ପୋତା ଅନୁସନ୍ଧାନ କରୁଥିବ । 'ମସ୍ତରାମ' ଥିବେ ବହିଟିର ଲେଖକ ଏବଂ ଏହାର ପ୍ରଥମ ପୃଷ୍ଠାରେ 'ଦିଅର ଭାଉଜ ପରକିୟା ପ୍ରୀତି' ଶୀର୍ଷକ ବିଷୟଟିଏ ସ୍ଥାନ ପାଇଥିବ । ଉଃ, ଃ...ଃ... କି ବର୍ଣ୍ଣନା! ବଳରାମ ଦାସଙ୍କ ଦାଣ୍ଡି ବୃତ୍ତରେ ଉପାଖ୍ୟାନଟି ବର୍ଣ୍ଣିତ ହୋଇଥିବ । ଏକା ନିଶ୍ୱାସରେ ପୋତା ପଢ଼ି ଚାଲୁଥିବ । ସ୍ୱାମୀ ବର୍ଷବର୍ଷ ଧରି ଦୂର ଦେଶରେ ରହୁଥିବେ । ସ୍ୱାମୀ ସୁଖରୁ ବଞ୍ଚିତ ବିରହୀ ଭାଉଜଟି କିମିତି ଦିଅରକୁ ଏକଲା ଘରକୁ ଡାକି ତାର ସେଇଟାକୁ ଧରି.... ଇସ୍.... । ଆଉ.... ଆଉ.... ଇସ୍.... ଇସ୍..... । କି ବର୍ଣ୍ଣନା!! ଇଲୋ, ବୋଉଲୋ । କି, ବର୍ଣ୍ଣନା, ପୋତାର ମୁଣ୍ଡ ଗରମ ହୋଇ ଯାଉଥିବ ।

ଅନ୍ଧାରିଆ ବୁଦା ମଧ୍ୟରେ ସେ ତାର ଗୁପ୍ତ କଳାକୁ ପ୍ରୟୋଗ କରୁଥିବ । ତାକୁ ଏହା ଭାରି ଭଲ ଲାଗୁଥିବ । ସେହି ସମୟରେ ତାକୁ ସମସ୍ତେ ଭଲ ଲାଗୁଥିବେ । କଲେଜ ସାଙ୍ଗ ତଅପୋଇ, ସୁମିତ୍ରା, ବଗୁଲି, ରେଖା, ରେଣୁ ସମସ୍ତେ ଏକାବେଳକେ ତାକୁ ଭଲ ଲାଗୁଥିବେ । ସମସ୍ତଙ୍କୁ ଟିକେଟିକେ ଗେଲ କରିବାକୁ ପୋତାର ଇଚ୍ଛା ହେଉଥିବ । ଆସନ୍ତାକାଲି କଲେଜରେ ସେମାନଙ୍କ ସହ ଭଲ ଭାବେ ମିଶିବାକୁ ଇଚ୍ଛା କରି ବାକି କାମତକ ସାରି ଦେଉଥିବ । ସେହିକ୍ଷଣି ତଅପୋଇକୁ କୁଣ୍ଢେଇ ପକେଇବାକୁ ଇଚ୍ଛା ହେଉଥିବ । ପୁଣି ରେଣୁ କଥା ମନେ ପଡ଼ିଯାଉଥିବ । କଲେଜ ପଡ଼ିଆରେ ଦଉଡୁଥିବାବେଳେ ରେଣୁର ସ୍ତନ ଦୁଇଟି କିଭଳି ଭାବେ ଦୋହଲୁଥିବ, ଆଃ । ଦେହ ଶିତେଇ ଉଠୁଥିବ । ସର୍ବାଙ୍ଗ ଥରି ଉଠୁଥିବ । ସେତେବେଳକୁ ସବୁ କାର୍ଯ୍ୟକ୍ରମ ଶେଷ ହୋଇ ସାରିଥିବ । ହାଲିଆ ଲାଗୁଥିବ ।



Digitized by srujanika@gmail.com

ଧୁତ୍, ଏତିକି ଟିକେ କାମ ପାଇଁ ସେ କଣ୍ଟା ବଣରୁ ରାଜନଗର ଚାଲି ଆସିଥିବ । ବହିଟିକୁ ପୁଣି ଫ୍ୟାଣ୍ଟ ଭିତରେ ପୂରେଇବ ଏବଂ ସାଇକେଲ ଉପରେ ବସିବ । ପୁଣି ବ୍ୟାକ୍ ଟୁ ପ୍ୟାଭିଲିଅନ୍, ମାନେ ସିଧା ଗାଁ ମୁହାଁ ହେଉଥିବ । ଶରୀର ଦୁର୍ବଳ ଲାଗୁଥିବ । ସାଇକେଲ ଚଲେଇବାକୁ ଇଛା ହେଉ ନଥିବ । କେତେବେଳେ ଯାଇ ଗାଁରେ ପହଞ୍ଚିବ, ବେଷ୍ଟ ହୋଇ ପଡୁଥିବ ।

ଘରେ ପହଞ୍ଚିବା ପରେ ବି ପୋତାକୁ ନିସ୍ତାର ନଥିବ । ଘରେ ପୁଣି ସେହି ବହିକୁ ଦେଖି ପୋତା ଡରି ଯାଉଥିବ । ଇଛା ନଥିଲେ ବି, ସୋସିଓଲୋଜି, ଇକୋନମିକ୍ସ ବହିକୁ ସାଙ୍ଗରେ ନେଇ ପୋତା ନିଜ ପଢାଘରକୁ ଯାଉଥିବ ।

ଦିନ ତମାମ୍ ଘଟିଥିବା ତାର ସମସ୍ତ ଅନୁଭୂତିକୁ ମନେ ପକେଇ ଦୁଃଖିତ ହେଉଥିବ ଓ ପଶ୍ଚାତାପର ନିଆଁରେ ଜଳୁଥିବ । ପରୀକ୍ଷା ଆଉ କେଇ ଦିନ ରହିଲା, ପାଠ ବହି ପଢିବାକୁ ଇଛା ଲାଗୁ ନଥିବାରୁ ଦୁଃଖରେ ଭାଙ୍ଗି ପଡୁଥିବ । ସୋସିଓଲୋଜି, ପଲିଟିକାଲ୍ ସାଇନ୍ସ, ଇକୋନମିକ୍ସ ବହି ତାକୁ ଖତେଇ ହେଲା ଭଳି ଲାଗୁଥିବ । ମାତ୍ର ମସ୍ତରାମ ବହି ତାକୁ କାହିଁକି ଏତେ ଭଲ ଲାଗୁଥିବ, ସେ ମନେମନେ ଆଶ୍ଚର୍ଯ୍ୟ ହେଉଥିବ ଓ ସେ ଶଳା ହାରାମୀକୁ ଦୋ' ଅକ୍ଷରୀ ଲଗେଇ ଗାଳିଗୁଲଜ କରୁଥିବ ।

ସୋସିଓଲୋଜିର ଭାରତୀୟ ସାମାଜିକ ବ୍ୟବସ୍ଥାର ଶ୍ରେଣୀ ବିଭାଗ ଏବଂ ପଲିଟିକାଲ୍ ସାଇନ୍ସର ଭାରତୀୟ ସମ୍ବିଧାନ ଓ ବିଭିନ୍ନ ଧାରା ତାର ମୁଣ୍ଡରେ ପଶୁ ନଥିବ । ଇକୋନମିକ୍ସର ଭାରତୀୟ ଅର୍ଥ ବ୍ୟବସ୍ଥା, ସେୟାର ବଜାର ଓ ସେନ୍‌ସେକ୍ସ, ମୁଦ୍ରାସ୍ଫିତି ହାର, ମୁଣ୍ଡପିଛା ଆୟ ତାକୁ କାଲ ଆଗରେ ମୂଳା ତୋବେଇଲା ପରି ଲାଗୁଥିବ । ପରୀକ୍ଷା ଯେତେ ପାଖେଇ ଆସୁଥିବ ଏହି ବହିଗୁଡିକ ସହ ତାର ଶତ୍ରୁତା ସେତେ ଘନୀଭୂତ ହେଉଥିବ ।

ଏହା ମଧ୍ୟରେ ପ୍ଲସ୍ ଟୁ ଆର୍ଟ୍ସ ରେଜଲ୍ଟ ବାହାରି ଯାଇଥିବ । ରେଜଲ୍ଟ ବହିରେ ପୋତାର ରୋଲ୍ ନମ୍ବର ନଥିବ । ବିଚରା ମନ ଦୁଃଖରେ ଘରକୁ ଫେରୁଥିବ ।

ମସ୍ତରାମ ବହିଟିକୁ ଧରି ଗାଁର ଶେଷ ମୁଣ୍ଡରେ, ଅଳ୍ପ କିଛି ମାସ ତଳେ ନିର୍ମିତ ହୋଇଥିବା ବାତ୍ୟା ନିରୋଧ ଆଶ୍ରୟ କୋଠାର ଛାତ ଉପରକୁ ଚାଲି ଯାଉଥିବ । ସେଠି ନିରୋଳାରେ ବହିଟିକୁ ପଢି ଧଇଁସଇଁ ହୋଇ ପଡୁଥିବ ଏବଂ କ୍ରମେ ଶାନ୍ତ ହେବାକୁ ଆରମ୍ଭ କରୁଥିବ । ନିଦରେ ଛାତ ଉପରେ ଗାମୁଛା ପରି ଆରାମ୍‌ରେ ଶୋଇ ପଡୁଥିବ । ଆଃ, କି ଶାନ୍ତି । ଓଁ ଦ୍ୟୌଃ ଶାନ୍ତିରନ୍ତରୀକ୍ଷ ଗ୍‌ମ୍ ଶାନ୍ତିଃ, ପୃଥିବୀ ଶାନ୍ତିରାପଃ, ଶାନ୍ତିରୋଷଧୟଃ ଶାନ୍ତିଃ । ବନସ୍ପତୟଃ ଶାନ୍ତିର୍ବିଶ୍ୱେଦେବାଃ, ଶାନ୍ତିର୍ବ୍ରହ୍ମ ଶାନ୍ତିଃ, ସର୍ବ ଗ୍‌ମ୍ ଶାନ୍ତିଃ, ଶାନ୍ତିରେବ ଶାନ୍ତିଃ, ସା ମା ଶାନ୍ତିରେଧି । ଓଁ ଶାନ୍ତିଃ, ଶାନ୍ତିଃ, ଶାନ୍ତିଃ । ସର୍ବାରିଷ୍ଟ ସୁଶାନ୍ତିର୍ଭବତୁ ॥

□



Digitized by srujanika@gmail.com

# ରଂଜନ ପ୍ରଧାନଙ୍କ

## ଲିଖିତ କିଛି ବହୁମୂଲ୍ୟ ଗ୍ରନ୍ଥ

ଯୋଗାଯୋଗ : ରଂଜନ ପ୍ରଧାନ/ପ୍ରଜ୍ଞା ପ୍ରଧାନ
ଫୋନ୍ : ୯୪୩୭୨୧୩୮୫୪, ୯୪୩୯୨୭୦୫୭୭
E Mail : ranjan.pragyan@gmail.com
ranjan_pragyan@rediffmail.com



୧. ମାଟି ଗୀତ
(ଓଡ଼ିଆ କବିତା ସଂକଳନ, ପ୍ରକାଶକ: ପାଇନ୍ ବୁକ୍ସ, କଟକ, ପ୍ରକାଶ କାଳ : ୨୦୦୩)



୨. ତନୁଜା ବଳଙ୍କୁ ନେଇ ଯେତେସବୁ ବେକାରିଆ ଗପ
(ଓଡ଼ିଆ କ୍ଷୁଦ୍ର ଗଳ୍ପ ସଂକଳନ, ପ୍ରକାଶକ: ଇଙ୍କ୍ ଓଡ଼ିଶା, ଭୁବନେଶ୍ୱର, ପ୍ରକାଶ କାଳ: ୨୦୦୪)




୩. ଭିଟାମିନ୍
(ଓଡ଼ିଆ କ୍ଷୁଦ୍ର ଗଳ୍ପ ସଂକଳନ, ପ୍ରକାଶକ: ପଶ୍ଚିମା, ଭୁବନେଶ୍ୱର, ପ୍ରକାଶ କାଳ: ୨୦୦୬)




୪. ନବରଙ୍ଗପୁର ଜିଲ୍ଲାର ସଂସ୍କୃତି ଓ ପର୍ଯ୍ୟଟନ
(ଜିଲ୍ଲାର ସଂସ୍କୃତି, ପର୍ଯ୍ୟଟନ, ପରଂପରା, ପ୍ରଥାକୁ ନେଇ ଏକ ହ୍ୟାଣ୍ଡ ବୁକ୍, ପ୍ରକାଶକ: ପ୍ରଜ୍ଞା ପରିମିତା, କେନ୍ଦ୍ରାପଡ଼ା, ପ୍ରକାଶ କାଳ: ୨୦୦୭)



Digitized by srujanika@gmail.com




୫. ବଣ ଡଙ୍ଗରର ଗପ
(ଆଦିବାସୀ ଲୋକ ଗପ ସଂଗ୍ରହ (ଅବିଭକ୍ତ କୋରାପୁଟ ଅଞ୍ଚଳରୁ), ପ୍ରକାଶକ: ପ୍ରଜ୍ଞା ପରିମିତା, କେନ୍ଦ୍ରାପଡ଼ା, ପ୍ରକାଶ କାଳ: ୨୦୦୭)




୬. ପରଜା ଜୀବନ ଓ ସଂସ୍କୃତି
(ଆଦିବାସୀ ଗବେଷଣାତ୍ମକ ପୁସ୍ତକ, ପ୍ରକାଶକ: ପ୍ରଜ୍ଞା ପରିମିତା, କେନ୍ଦ୍ରାପଡ଼ା, ପ୍ରକାଶ କାଳ: ୨୦୦୭)




୭. Tales from hill and jungle (English)
(Book on Tribal folk tales of Koraput region, Published by Creative Odisha, Kendrapada, 2009)




୮. ଭାଗବତ ଟୁଙ୍ଗି
(ଓଡ଼ିଆ କବିତା ସଂକଳନ, ପ୍ରକାଶକ: କ୍ରିଏଟିଭ୍ ଓଡ଼ିଶା, କେନ୍ଦ୍ରାପଡ଼ା, ପ୍ରକାଶ କାଳ: ୨୦୧୦)



Digitized by srujanika@gmail.com

୯. ଆଦିବାସୀ ନାଚ ଓ ଗୀତ
(ଆଦିବାସୀ ଗବେଷଣା ପୁସ୍ତକ, ପ୍ରକାଶକ: କ୍ରିଏଟିଭ୍ ଓଡ଼ିଶା, କେନ୍ଦ୍ରାପଡ଼ା, ପ୍ରକାଶ କାଳ: ୨୦୧୨)



୧୦. ଐତିହ୍ୟ, ସଂସ୍କୃତି, ପର୍ଯ୍ୟଟନ: କେନ୍ଦୁଝର
(କେନ୍ଦୁଝର ଜିଲ୍ଲାକୁ ନେଇ ଏକ ବଡ଼ ହ୍ୟାଣ୍ଡବୁକ୍, ପ୍ରକାଶକ: କ୍ରିଏଟିଭ ଓଡ଼ିଶା, କେନ୍ଦ୍ରାପଡ଼ା, ପ୍ରକାଶ କାଳ: ୨୦୧୨)



୧୧. ଜୁଆଙ୍ଗ ପର୍ବପର୍ବାଣି
(ଆଦିବାସୀ ଗବେଷଣାତ୍ମକ ପୁସ୍ତକ, ପ୍ରକାଶକ: କ୍ରିଏଟିଭ୍ ଓଡ଼ିଶା, କେନ୍ଦ୍ରାପଡ଼ା, ପ୍ରକାଶ କାଳ: ୨୦୧୪)



୧୨. ଗୋନାସିକା ନନ୍ଦିନୀ ବୈତରଣୀ
(ନଦୀକୁ ନେଇ ଏକ ଗବେଷଣାତ୍ମକ ଗ୍ରନ୍ଥ, ପ୍ରକାଶକ: କ୍ରିଏଟିଭ ଓଡ଼ିଶା, ପ୍ରକାଶ କାଳ: ୨୦୧୫)




୧୩. ଡୁମା ଦେବତା ଓ ଅନ୍ୟାନ୍ୟ ଗଳ୍ପ
(ଓଡ଼ିଆ କ୍ଷୁଦ୍ରଗଳ୍ପ ସଂକଳନ, ପ୍ରକାଶନ ଅପେକ୍ଷାରେ)

୧୪. ପର୍ଯ୍ୟଟନ ଓ ପ୍ରତ୍ନତତ୍ତ୍ୱ : ମୟୂରଭଞ୍ଜ
(ମୟୂରଭଞ୍ଜ ଜିଲ୍ଲାର ପର୍ଯ୍ୟଟନ, ପ୍ରତ୍ନତତ୍ତ୍ୱ, କଳା, ସଂସ୍କୃତି ଓ ପରମ୍ପରାକୁ ନେଇ ଏକ ବୃହତ୍ ହ୍ୟାଣ୍ଡବୁକ୍, ପ୍ରକାଶକ: କ୍ରିଏଟିଭ ଓଡ଼ିଶା, କେନ୍ଦ୍ରାପଡ଼ା, ପ୍ରକାଶ ଅପେକ୍ଷାରେ)



Digitized by srujanika@gmail.com

୨୦୧୬ ମସିହା ପାଇଁ ରଂଜନ ପ୍ରଧାନଙ୍କ ଗପ ବହି **ଭିଟାମିନ୍** କିଶୋରୀ ଚରଣ ପୁରସ୍କାର ପାଇଛି । ଆଜିକୁ ଦଶ ବର୍ଷ ତଳେ ପ୍ରକାଶ ପାଇଥିବା ଏହି ବହିଟି ବଜାରରେ ଉପଲବ୍ଧ ନହେବାରୁ ଏହାର ପୁନଃ ପ୍ରକାଶନ କରିବାକୁ ଯାଉଛୁ । ସାଂପ୍ରତିକ ଓଡିଆ ସାହିତ୍ୟରେ ଗାଳ୍ପିକ ରଂଜନ ପ୍ରଧାନ ଜଣେ ନିଆରା ପଦାତିକ । ତଥାକଥିତ ଗଳ୍ପ ପାଠୋତ୍ସବ, ପତ୍ରପତ୍ରିକାରେ ପ୍ରକାଶନ, ବୁଦ୍ଧିଜୀବି ସମାବେଶ, ଭାଷଣବାଜି, ଧରାଧରି ଦୌଡ଼ ଧାଁରେ ସେ ନଥାନ୍ତି କେବେ । ଗପ ମାର୍ଫତରେ ପାଠକ ପାଠିକାଙ୍କ ସହ ସବୁବେଳେ ଥାଆନ୍ତି ଗାଳ୍ପିକ ରଂଜନ ପ୍ରଧାନ ନିରୋଳାରେ । ଆପଣାର ଗବେଷଣାଧର୍ମୀ ସୃଷ୍ଟି ଓ ନିଆରାପଣ ପାଇଁ ସେ ଓଡିଆ ଗଳ୍ପ ସାହିତ୍ୟରେ ଅଳଂକୃତ କରିଛନ୍ତି ସ୍ୱତନ୍ତ୍ର ଆସନ । ଶ୍ରୀ ପ୍ରଧାନ ଗପରେ ଯେମିତି ଚହଲେଇ ଦେଇଛନ୍ତି ଓଡିଆଙ୍କ ହୃଦୟକୁ ସେମିତି ତାଙ୍କ କବିତାର ତୀକ୍ଷ୍ଣ ତୀର ଭେଦ କରିଛି ପାଠକଙ୍କ ଗଭୀର ଅନ୍ତଃପ୍ରଦେଶକୁ । ଜୀବନର ଅତି ଛୋଟ ଘଟଣା ଓ ଅନୁଭୂତିରୁ ସେ ସୃଷ୍ଟି କରନ୍ତି ତାଙ୍କ ଗପର କୋଣାର୍କ । ପ୍ରଚାର ଠାରୁ ଢେର୍ ଦୂରରେ ଥାଇ ନିଜ ସାଧନାରେ ମଗ୍ନ ରହି ଜୀବନ ଜୀଇଁବାର ଏକ ଚମତ୍କାର ଫର୍ମୁଲା ହାସଲ କରିପାରିଛନ୍ତି ଶ୍ରୀ ପ୍ରଧାନ । ତାଙ୍କର ଗଳ୍ପ ସଂକଳନ ତନୁଜା ତଳକୁ ନେଇ ଯେତେସବୁ ବେକାରିଆ ଗଳ୍ପ ଓ ଭିଟାମିନ୍ ପ୍ରଚୁର ପାଠକୀୟତା ଲାଭ କରି ଓଡିଆ ସାହିତ୍ୟରେ ଆଲୋଡନ ସୃଷ୍ଟି କରିଥିଲା । ସେ ବହି ଦୁଇଟି ଏବେ ଆଉଟ୍ ଅଫ୍ ପ୍ରିଣ୍ଟ । ରଂଜନ ପ୍ରଧାନ , ଗପର ଜଣେ ଅଲକେମିଷ୍ଟ ଓ ଯାଦୁଗର । ପ୍ରେମ, ବିଦ୍ରୋହ ଓ କରୁଣାର କେମେଷ୍ଟ୍ରି ତାଙ୍କ ଗପର ସଂରଚନାକୁ ଔଜଲ୍ୟ ପ୍ରଦାନ କରିଥାଏ । ରଂଜନଙ୍କ ଗପ ବେଶ୍ ଆଧୁନିକ । ବିନା ମେକଅପ୍‌ରେ ଥିବା ସୁନ୍ଦରୀ ତରୁଣୀଟିଏର ସତେଜତା ସହ ସ୍ୱାଭାବିକ ରୂପ ରଙ୍ଗ ପରି ତାଙ୍କର ଭାବ ଆଉ ଭାଷା ବିନ୍ୟାସ ଗଳ୍ପ ଗୁଡିକୁ ଦେଇଛି ଚେତନା ପ୍ରବାହର ଏକ ନିରବଚ୍ଛିନ୍ନ ଧାରା । ରଂଜନ ପ୍ରଧାନ ଗପରେ ଗପରେ ଶୋଚାଏ ମନୋରଂଜନ । ସରଳତା ଓ ସ୍ୱଚ୍ଛତା ତାଙ୍କ ଗପର ଷ୍ଟାଇଲ । ଗାଳ୍ପିକ ରଂଜନ ପ୍ରଧାନଙ୍କ **ଭିଟାମିନ୍** ବହିଟିକୁ ପ୍ରଥମେ " ପଶ୍ଚିମା " ଗତ ୨୦୦୬ ମସିହାରେ ପ୍ରକାଶ କରିଥିଲା । ଏହା ପରେ ପଶ୍ଚିମା ଏବଂ ଲେଖକଙ୍କର ଅନୁମତି କ୍ରମେ ବହିଟିର ଦ୍ୱିତୀୟ ସଂସ୍କରଣ "କ୍ରିଏଟିଭ୍ ଓଡିଶା" ପକ୍ଷରୁ ପ୍ରକାଶ ହେଇଛି । ବହୁ ଓଡିଆ ପାଠକ, ପ୍ରଶଂସକ ମହଲର ଦାବି ରକ୍ଷା କରିବାକୁ ଯାଇ ଆମେ ଏହାର ତୃତୀୟ ସଂସ୍କରଣ ପ୍ରକାଶ କରିବାକୁ ଯାଉଛୁ ।ଈଶ୍ୱରଙ୍କ କୃପାରୁ ଏବଂ ଓଡିଶାର ପ୍ରିୟ ପାଠକ ପାଠିକାଙ୍କ ଭଲ ପାଇବାରୁ ଯଦି ଏହାର ପରବର୍ତ୍ତୀ ସଂସ୍କରଣର ଆବଶ୍ୟକତା ପଡେ ତେବେ ଖୁବ୍ ଶୀଘ୍ର ଆମେ ଏହା ପୂରଣ କରିବୁ ।



Ranjan Pradhan's

a creative odisha publication




**VITAMIN**

Story collection by Ranjan Pradhan

Published by **Creative Odisha**,

Niginpur, Sana Jaria, Kendrapada

Marketing by Paschima Publications

Bhubaneswar, Odisha-12

1st Edition: 2006

2nd Edition: 2011

3rd Edition: 2016

Digitized by srujanika@gmail.com